**ପ୍ରକାଶକ : ଶ୍ରୀ ଅଜିତ୍ ସି. ପଟେଲ**
**ଦାଦା ଭଗବାନ ଆରାଧନା ଟ୍ରଷ୍ଟ**
୫, ମମତା ପାର୍କ ସୋସାଇଟୀ, ନବଗୁଜୁରାଟ
କଲେଜ ପଛ, ଉସ୍ମାନପୁରା,
ଅହମଦାବାଦ୍-୩୮୦୦୧୪, ଗୁଜୁରାଟ
**ଫୋନ୍ :** (୦୭୯) ୩୯୮୩୦୧୦୦

© All Rights reserved - Deepakbhai Desai
Trimandir, Simandhar City Ahmedabad-Kalol Highway,
Adalaj, Dist- Gandhinagar-382421, Gujarat, India
*No part of this book may be used or reproduced in any manner whatsoever without written permission from the holder of the copy right.*

**ଦ୍ୱିତୀୟ ସଂସ୍କରଣ : ବହି ସଂଖ୍ୟା ୨୦୦୦ ନଭେମ୍ବର ୨୦୧୭**

**ଭାବ ମୂଲ୍ୟ :** 'ପରମ ବିନୟ' ଏବଂ
'ମୁଁ କିଛି ମଧ୍ୟ ଜାଣି ନାହିଁ', ଏହି ଭାବ !

**ଦ୍ରବ୍ୟ ମୂଲ୍ୟ :** ୧୦ ଟଙ୍କା

**ମୁଦ୍ରକ :** ଅମ୍ବା ଅଫ୍‌ସେଟ୍ ,
B-99, ଇଲେକ୍ଟ୍ରୋନିକ୍ସ G.I.D.C, K-6 ରୋଡ଼୍,
ସେକ୍ଟର-୨୫, ଗାନ୍ଧୀନଗର - ୩୮୨୦୪୪
ଫୋନ୍ : (୦୭୯) ୩୯୮୩୦୩୪୧/୪୨

# ତ୍ରିମନ୍ତ୍ର








ନମୋ ଅରିହଂତାଣଂ

ନମୋ ସିଦ୍ଧାଣଂ

ନମୋ ଆୟରିୟାଣଂ

ନମୋ ଉବଜ୍ଝାୟାଣଂ

ନମୋ ଲୋଏ ସବ୍ୱସାହୁଣଂ

ଏସୋ ପଞ୍ଚ ନମୁକ୍କାରୋ,

ସବ୍ୱ ପାବପ୍ପଣାସଣୋ

ମଙ୍ଗଲାଣଂ ଚ ସବ୍ୱେସିଂ,

ପଢମଂ ହବଇ ମଙ୍ଗଲମ୍ ॥୧॥

ॐ ନମୋ ଭଗବତେ ବାସୁଦେବାୟ ॥୨॥

ॐ ନମଃ ଶିବାୟ ॥ ୩ ॥

॥ ଜୟ ସଚ୍ଚିଦାନନ୍ଦ ॥



# ଆତ୍ମଜ୍ଞାନ ପ୍ରାପ୍ତି ପାଇଁ ପ୍ରତ୍ୟକ୍ଷ ଲିଙ୍କ୍

"ମୁଁ ତ କିଛି ଲୋକଙ୍କୁ ନିଜ ହାତରେ ସିଦ୍ଧି ପ୍ରଦାନ କରିବାକୁ ଯାଉଛି । ପଛରେ ଅନୁଗାମୀ ଦରକାର କି ନାହିଁ ? ପରେ ଲୋକଙ୍କୁ ମାର୍ଗ ତ ଦରକାର ନା ?"

**- ଦାଦାଶ୍ରୀ**

ପରମ ପୂଜ୍ୟ ଦାଦାଶ୍ରୀ ଗାଁ-ଗାଁ, ଦେଶ-ବିଦେଶ ପରିଭ୍ରମଣ କରି ମୁମୁକ୍ଷୁମାନଙ୍କୁ ସତ୍‌ସଙ୍ଗ ଏବଂ ଆତ୍ମଜ୍ଞାନ ପ୍ରାପ୍ତି କରାଉଥିଲେ । ସେ ନିଜର ଜୀବନ କାଳ ମଧ୍ୟରେ ହିଁ ପୂଜ୍ୟ ଡା. ନୀରୂବେନ ଅମୀନ(ନୀରୂମା)ଙ୍କୁ ଆତ୍ମଜ୍ଞାନ ପ୍ରାପ୍ତି କରାଇବାର ଜ୍ଞାନସିଦ୍ଧି ପ୍ରଦାନ କରିଥିଲେ । ଦାଦାଶ୍ରୀଙ୍କ ଦେହବିଲୟ ପରେ ନୀରୂମା ସେହିପରି ମୁମୁକ୍ଷୁମାନଙ୍କୁ ସତ୍‌ସଙ୍ଗ ଏବଂ ଆତ୍ମଜ୍ଞାନର ପ୍ରାପ୍ତି, ନିମିତ୍ତ ଭାବରେ କରାଉଥିଲେ । ପୂଜ୍ୟ ଦୀପକଭାଇ ଦେଶାଇଙ୍କୁ ଦାଦାଶ୍ରୀ ସତ୍‌ସଙ୍ଗ କରିବାର ସିଦ୍ଧି ପ୍ରଦାନ କରିଥିଲେ । ନୀରୂମାଙ୍କ ଉପସ୍ଥିତିରେ, ତାଙ୍କର ଆଶୀର୍ବାଦ ଦ୍ୱାରା ପୂଜ୍ୟ ଦୀପକଭାଇ ଦେଶ-ବିଦେଶରେ ଅନେକ ଜାଗାକୁ ଯାଇ ମୁମୁକ୍ଷୁମାନଙ୍କୁ ଆତ୍ମଜ୍ଞାନ ପ୍ରାପ୍ତି କରାଉଥିଲେ, ଯାହା ନୀରୂମାଙ୍କ ଦେହବିଲୟ ପରେ ଆଜି ମଧ୍ୟ ଚାଲୁ ରହିଛି । ଏହି ଆତ୍ମଜ୍ଞାନ ପ୍ରାପ୍ତି ପରେ ହଜାର ହଜାର ମୁମୁକ୍ଷୁ ସଂସାରରେ ରହି, ନିଜର ସାଂସାରିକ ଦାୟିତ୍ୱ ବହନ କରି ମଧ୍ୟ ମୁକ୍ତ ରହି ଆତ୍ମରମଣତାର ଅନୁଭବ କରୁଛନ୍ତି ।

ଏହି ପୁସ୍ତକରେ ମୁଦ୍ରିତ ବାଣୀ ମୋକ୍ଷାର୍ଥୀମାନଙ୍କୁ ମାର୍ଗଦର୍ଶନ ରୂପରେ ଅତ୍ୟନ୍ତ ଉପଯୋଗୀ ସିଦ୍ଧ ହେବ, ମାତ୍ର ମୋକ୍ଷପ୍ରାପ୍ତି ପାଇଁ ଆତ୍ମଜ୍ଞାନ ପ୍ରାପ୍ତ କରିବା ଆବଶ୍ୟକ ଅଟେ । ଅକ୍ରମ ମାର୍ଗ ଦ୍ୱାରା ଆତ୍ମଜ୍ଞାନ ପ୍ରାପ୍ତିର ମାର୍ଗ ଆଜି ମଧ୍ୟ ଖୋଲା ଅଛି । ଯେପରି ପ୍ରଜ୍ୱଳିତ ଦୀପ ହିଁ ଅନ୍ୟ ଦୀପକୁ ପ୍ରଜ୍ୱଳିତ କରିପାରେ, ସେହିପରି ପ୍ରତ୍ୟକ୍ଷ ଆତ୍ମଜ୍ଞାନୀଙ୍କଠାରୁ ଆତ୍ମଜ୍ଞାନ ପ୍ରାପ୍ତି କରି ହିଁ ସ୍ୱୟଂର ଆତ୍ମା ଜାଗୃତ ହୋଇପାରେ ।

# ନିବେଦନ

ଆତ୍ମବିଜ୍ଞାନୀ ଶ୍ରୀ ଅମ୍ବାଲାଲ ମୂଳଜୀଭାଇ ପଟେଲ, ଯାହାଙ୍କୁ ଲୋକେ 'ଦାଦା ଭଗବାନ' ନାମରେ ମଧ୍ୟ ଜାଣନ୍ତି, ତାଙ୍କ ଶ୍ରୀମୁଖରୁ ଅଧ୍ୟାତ୍ମ ତଥା ବ୍ୟବହାର ଜ୍ଞାନ ସମ୍ବନ୍ଧୀୟ ଯେଉଁ ବାଣୀ ବାହାରିଛି, ସେସବୁକୁ ରେକର୍ଡ କରି, ସଙ୍କଳନ ତଥା ସମ୍ପାଦନ କରି ପୁସ୍ତକ ରୂପରେ ପ୍ରକାଶିତ କରାଯାଉଛି ।

ପ୍ରସ୍ତୁତ ଅନୁବାଦରେ ଏହା ବିଶେଷ ଧ୍ୟାନ ରଖାଯାଇଛି ଯେ, ପାଠକଙ୍କୁ ଦାଦାଶ୍ରୀଙ୍କର ହିଁ ବାଣୀ ଶୁଣାଯାଉଛି, ଏପରି ଅନୁଭବ ହେଉ, ଯେଉଁ କାରଣରୁ ବୋଧହୁଏ କିଛି ଜାଗାରେ ଅନୁବାଦର ବାକ୍ୟ ରଚନା ଓଡ଼ିଆ ବ୍ୟାକରଣ ଅନୁସାରେ ତ୍ରୁଟିପୂର୍ଣ୍ଣ ଲାଗିପାରେ, କିନ୍ତୁ ଏଠାରେ ଆଶୟ(ହେତୁ)କୁ ବୁଝି ପଢ଼ାଯିବ ତେବେ ଅଧିକ ଲାଭକାରୀ ହେବ ।

ଜ୍ଞାନୀଙ୍କ ବାଣୀକୁ ଓଡ଼ିଆ ଭାଷାରେ ଯଥାର୍ଥ ରୂପରେ ଅନୁବାଦ କରିବାର ପ୍ରୟାସ କରାଯାଇଛି । ପ୍ରସ୍ତୁତ ପୁସ୍ତକରେ ଅନେକ ଜାଗାରେ ବନ୍ଧନୀରେ ଦର୍ଶାଯାଇଥିବା ଶବ୍ଦ ବା ବାକ୍ୟ ପରମପୂଜ୍ୟ ଦାଦାଶ୍ରୀଙ୍କ ଦ୍ୱାରା କୁହାଯାଇଥିବା ବାକ୍ୟକୁ ଅଧିକ ସ୍ପଷ୍ଟତାପୂର୍ବକ ବୁଝାଇବା ହେତୁ ଲେଖା ଯାଇଛି । ଯେବେକି କିଛି ଜାଗାରେ ଇଂରାଜୀ ଶବ୍ଦକୁ ଓଡ଼ିଆ ଅର୍ଥରୂପରେ ରଖାଯାଇଛି । ଦାଦାଶ୍ରୀଙ୍କ ଶ୍ରୀମୁଖରୁ ବାହାରିଥିବା କିଛି ଗୁଜୁରାଟୀ ଶବ୍ଦ ଯେମିତିକୁ ସେମିତି ରଖାଯାଇଛି, କାରଣ ସେ ଶବ୍ଦଗୁଡ଼ିକ ପାଇଁ ଓଡ଼ିଆରେ ଏପରି କିଛି ଶବ୍ଦ ନାହିଁ, ଯାହା ତାହାର ପୂର୍ଣ୍ଣ ଅର୍ଥ ଦେଇପାରିବ ।

ଅନୁବାଦଜନିତ ତ୍ରୁଟି ପାଇଁ ଆପଣଙ୍କ ପାଖରେ କ୍ଷମାପ୍ରାର୍ଥୀ ଅଟୁ ।

❖ ❖ ❖

# ସମ୍ପାଦକୀୟ

ଜୀବନରେ ପ୍ରତ୍ୟେକ ପ୍ରସଙ୍ଗରେ ଆମେ ନିଜେ ହିଁ ବୁଝିବିଚାରି ସାମ୍ନାବ୍ୟକ୍ତି ସହ ଏଡ଼ଜଷ୍ଟ ନ ହେବା ତେବେ ଭୟଙ୍କର ମତଭେଦ ହୋଇଚାଲିଥିବ । ଜୀବନ ବିଷମୟ ହୋଇଯିବ ଏବଂ ପରିଶେଷରେ ଜଗତ ଜବରଦସ୍ତି ଆମ ଦ୍ୱାରା ଏଡ଼ଜଷ୍ଟମେଣ୍ଟ କରାଇନେବ । ଇଚ୍ଛାରେ ହେଉ ବା ଅନିଚ୍ଛାରେ, ଆମକୁ ସର୍ବତ୍ର ଏଡ଼ଜଷ୍ଟ ହେବାକୁ ହିଁ ପଡ଼ିବ । ତେବେ ପୁଣି ବୁଝି-ବିଚାରି କାହିଁକି ଏଡ଼ଜଷ୍ଟ ନ ହେବା, ଯାଦ୍ୱାରା ଅନେକ ମତଭେଦ ଟାଳି ପାରିବା ଏବଂ ସୁଖ-ଶାନ୍ତି ସ୍ଥାପିତ ହେବ ।

ଲାଇଫ୍ ଇଜ୍ ନଥିଙ୍ଗ ବଟ୍ ଏଡ଼ଜଷ୍ଟମେଣ୍ଟ(ଜୀବନ ଅନ୍ୟ କିଛି ନୁହେଁ, କେବଳ ଏଡ଼ଜଷ୍ଟମେଣ୍ଟ ଅଟେ!) ଜନ୍ମରୁ ମୃତ୍ୟୁ ପର୍ଯ୍ୟନ୍ତ ଏଡ଼ଜଷ୍ଟମେଣ୍ଟସ୍ ନେବାକୁ ହେବ । ପୁଣି ପଛେ କାନ୍ଦିକରି ହେଉ ବା ହସିକରି! ପଢ଼ିବା ପସନ୍ଦ ହେଉ ବା ନ ହେଉ, କିନ୍ତୁ ଏଡ଼ଜଷ୍ଟ ହୋଇ ପଢ଼ିବାକୁ ହିଁ ହେବ! ବିବାହ ସମୟରେ ହୁଏତ ଖୁସି ଖୁସି ବିବାହ କରେ, କିନ୍ତୁ ବିବାହ ପରେ ସାରା ଜୀବନ ପତି-ପତ୍ନୀଙ୍କୁ ପାରସ୍ପରିକ ଏଡ଼ଜଷ୍ଟମେଣ୍ଟସ୍ ନେବାକୁ ହିଁ ହେବ । ଦୁଇ ଭିନ୍ନ ପ୍ରକୃତିଙ୍କୁ ସାରା ଜୀବନ ସାଥୀରେ ରହି, ଯାହା ତାଙ୍କ ହିସାବରେ ଥିବ ତାହାକୁ ପୂରା କରିବାକୁ ପଡ଼େ । ଏଥିରେ, ପରସ୍ପର ସହିତ ସାରା ଜୀବନ ସମ୍ପୂର୍ଣ୍ଣ ଏଡ଼ଜଷ୍ଟ ହୋଇ ରହୁଥିବେ, ଏପରି କେତେ ଜଣ ପୁଣ୍ୟବନ୍ତ ବ୍ୟକ୍ତି ଥିବେ ଏହି ଯୁଗରେ ? ଆରେ, ରାମଚନ୍ଦ୍ର ଏବଂ ସୀତାଙ୍କ ମଧ୍ୟରେ କ'ଣ ଅନେକ ଥର ଡ଼ିସ୍ଏଡ଼ଜଷ୍ଟମେଣ୍ଟ ହୋଇ ନଥିଲା ? ସ୍ୱର୍ଣ୍ଣମୃଗ, ଅଗ୍ନି ପରୀକ୍ଷା ଏବଂ ସଗର୍ଭା ହୋଇ ମଧ୍ୟ ବନବାସ ? ସେମାନେ କେତେ କ'ଣ ଏଡ଼ଜଷ୍ଟମେଣ୍ଟ ନେଇ ନଥିବେ ?

ମାତା-ପିତା ଏବଂ ସନ୍ତାନମାନଙ୍କ ସହିତ ପାଦେ-ପାଦେ କ'ଣ ଏଡ଼ଜଷ୍ଟମେଣ୍ଟସ୍ ନେବାକୁ ପଡ଼ି ନଥାଏ ? ଯଦି ସମଝଦାରୀର ସହ ଏଡ଼ଜଷ୍ଟ ହୋଇଯିବା ତେବେ ଶାନ୍ତି ରହିବ ଏବଂ କର୍ମ ବନ୍ଧନ ହେବ ନାହିଁ । ପରିବାରରେ, ମିତ୍ରମାନଙ୍କ ସହିତ, କର୍ମକ୍ଷେତ୍ରରେ ବସ୍ଙ୍କ ସହିତ, ବ୍ୟାପାରୀ କିମ୍ବା ଦଲାଲ୍ଙ୍କ ସହିତ, ସେୟାର ବଜାରର ଉତ୍ଥାନ-ପତନ ସହିତ, ସବୁ ଜାଗାରେ ଯଦି ଆମେ ଏଡ଼ଜଷ୍ଟମେଣ୍ଟ ନ ନେବା ତେବେ ଅନେକ ଦୁଃଖର ପାହାଡ଼ ସୃଷ୍ଟି ହୋଇଯିବ ।

ଏଥିପାଇଁ 'ଏଡ଼ଜଷ୍ଟ ଏଭ୍ରିହ୍ୱେୟାର'ର 'ମାଷ୍ଟର କି' ନେଇ ଯେଉଁ ମନୁଷ୍ୟ ଜୀବନ ନିର୍ବାହ କରିବ, ତା' ଜୀବନର କୌଣସି ତାଲା ନ ଖୋଲିବ, ଏପରି ହେବ ନାହିଁ । ଜ୍ଞାନୀପୁରୁଷ ପରମ ପୂଜନୀୟ ଦାଦାଶ୍ରୀଙ୍କ ସ୍ୱର୍ଣ୍ଣିମ ସୂତ୍ର 'ଏଡ଼ଜଷ୍ଟ ଏଭ୍ରିହ୍ୱେୟାର' ଜୀବନରେ ଆତ୍ମସାତ୍ କରିନେବା ତେବେ ସଂସାର ସୁଖମୟ ହୋଇଯିବ !

**-ଡା. ନୀରୁବେନ ଅମୀନଙ୍କ ଜୟ ସଚ୍ଚିଦାନନ୍ଦ**

# ଏଡ଼ଜଷ୍ଟ ଏଭ୍ରିହ୍ୱେୟାର

## ହଜମ କର, ଗୋଟିଏ ହିଁ ଶବ୍ଦ

**ପ୍ରଶ୍ନକର୍ତ୍ତା :** ଏବେ ତ ଜୀବନରେ ଶାନ୍ତିର ସରଳ ମାର୍ଗ ଚାହୁଁଛି ।

**ଦାଦାଶ୍ରୀ :** ଗୋଟିଏ ଶବ୍ଦ ଜୀବନରେ ଆପଣେଇବ, ସଠିକ୍ ରୂପେ, ଏକ୍‌ଜାକ୍ଟ ?

**ପ୍ରଶ୍ନକର୍ତ୍ତା :** ଏକ୍‌ଜାକ୍ଟ, ହଁ ।

**ଦାଦାଶ୍ରୀ :** 'ଏଡ଼ଜଷ୍ଟ ଏଭ୍ରିହ୍ୱେୟାର' ଏତକ ଶବ୍ଦକୁ ଯଦି ତୁମେ ଜୀବନରେ ଆପଣେଇନେବ ତେବେ ବହୁତ ହୋଇଗଲା । ତୁମକୁ ଶାନ୍ତି ଆପେ ଆପେ ପ୍ରାପ୍ତ ହେବ । ଆରମ୍ଭରେ ଛ'ମାସ ପର୍ଯ୍ୟନ୍ତ ଅସୁବିଧା ହେବ, ପରେ ଆପେ ଆପେ ଶାନ୍ତି ହୋଇଯିବ । ବିଳମ୍ବରେ ଆରମ୍ଭ କରିଥିବା କାରଣରୁ ପ୍ରଥମ ଛ'ମାସ ପର୍ଯ୍ୟନ୍ତ ପୂର୍ବ ରିଏକ୍ସନ ଆସିବ । ସେଥିପାଇଁ 'ଏଡ଼ଜଷ୍ଟ ଏଭ୍ରିହ୍ୱେୟାର' ! ଏହି କଳି ଯୁଗର ଏପରି ଭୟଙ୍କର କାଳରେ ଯଦି ଏଡ଼ଜଷ୍ଟ ନ ହେବ, ତେବେ ଖତମ ହୋଇଯିବ !

ସଂସାରରେ ଆଉ କିଛି ନ ଆସେ ତେବେ ଅସୁବିଧା ନାହିଁ କିନ୍ତୁ ଏଡ଼ଜଷ୍ଟ ହେବା ତ ଆସିବା ଉଚିତ । ସାମନାବ୍ୟକ୍ତି 'ଡ଼ିସ୍-ଏଡ଼ଜଷ୍ଟ' ହେଉ ଥାଉ, କିନ୍ତୁ ତୁମେ ଏଡ଼ଜଷ୍ଟ ହୋଇଚାଲିବ ତେବେ ସଂସାର-ସାଗର ପହଁରି ପାରି ହୋଇଯିବ । ଯାହାକୁ ଅନ୍ୟମାନଙ୍କ ସହ ଅନୁକୂଳ ହେବା ଆସିଲା, ତା'କୁ କୌଣସି ଦୁଃଖ ହିଁ ରୁହେ ନାହିଁ । 'ଏଡ଼ଜଷ୍ଟ ଏଭ୍ରିହ୍ୱେୟାର' ! ପ୍ରତ୍ୟେକଙ୍କ ସହିତ ଏଡ଼ଜଷ୍ଟମେଣ୍ଟ ହୋଇଯିବା ହିଁ ସବୁଠାରୁ ବଡ଼ ଧର୍ମ । ଏହି କାଳରେ ତ ସମସ୍ତଙ୍କର ଭିନ୍ନ ଭିନ୍ନ ପ୍ରକୃତି, ଏଣୁ ଏଡ଼ଜଷ୍ଟ ହେବା ବିନା କିପରି ଚଳିବ ?

## ଝାମେଲା କରିବ ନାହିଁ, ଏଡ଼ଜଷ୍ଟ ହୋଇଯିବ

ସଂସାରର ଅର୍ଥ ହିଁ ସମସରଣ ମାର୍ଗ, ସେଥିପାଇଁ ନିରନ୍ତର ପରିବର୍ତ୍ତନ ହୋଇଚାଲିଥାଏ । ଯେବେକି ଏ ବୟସ୍କ ଲୋକମାନେ ପୁରୁଣା କାଳକୁ ହିଁ ଜାବୁଡ଼ି ଧରି ଥାଆନ୍ତି । ଆରେ, ସମୟ ସହିତ ଚାଲ, ଅନ୍ୟଥା ମାଡ଼(ପ୍ରତିଘାତ) ଖାଇ ମରିଯିବ !

ସମୟ ଅନୁସାରେ ଏଡ଼ଜଷ୍ଟମେଣ୍ଟ ନେବାକୁ ହେବ । ମୋର ତ ଚୋରଙ୍କ ସହିତ, ପକେଟ ମାରୁଥିବା ବ୍ୟକ୍ତିଙ୍କ ସହିତ, ସମସ୍ତଙ୍କ ସହିତ ଏଡ଼ଜଷ୍ଟମେଣ୍ଟ ହୋଇଯାଏ । ଯଦି ମୁଁ ଚୋର ସହିତ କଥା ହୁଏ ତେବେ ସେ ମଧ୍ୟ ଜାଣିଯାଏ ଯେ ଇଏ କରୁଣାମୟ ଅଟନ୍ତି । ମୁଁ ତା'କୁ ଏପରି କୁହେ ନାହିଁ ଯେ 'ତୁ ଭୁଲ' । କାରଣ ତାହା ତା'ର 'ଭ୍ୟୁ ପଏଣ୍ଟ'(ଦୃଷ୍ଟିବିନ୍ଦୁ) ଅଟେ । ଯେବେକି ଲୋକେ ତା'କୁ 'ଅଯୋଗ୍ୟ' କହି ଗାଳି ଦିଅନ୍ତି । କ'ଣ ଏହି ଓକିଲମାନେ ମିଛୁଆ ନୁହନ୍ତି ? 'ବିଲ୍‌କୁଲ ମିଛ କେସ୍ ଜିତାଇ ଦେବି' ଯିଏ ଏଭଳି କୁହନ୍ତି କ'ଣ ସେମାନଙ୍କୁ ଠକ କୁହାଯିବ ନାହିଁ ? ଚୋରକୁ 'ଅଧମ' କହିବା ଆଉ ବିଲକୁଲ ମିଛ କେସ୍‌କୁ 'ସତ୍ୟ' କୁହନ୍ତି, ସେମାନଙ୍କର ସଂସାରରେ ବିଶ୍ୱାସ କିପରି କରିପାରିବା ? ତଥାପି, ତାଙ୍କର ବି ଚାଲୁଛି ନା ? କାହାରିକୁ ମୁଁ ଭୁଲ କୁହେ ନାହିଁ । ସେ ନିଜ 'ଭ୍ୟୁ ପଏଣ୍ଟ'ରେ କରେକ୍ଟ ହିଁ ଅଟେ । କିନ୍ତୁ ତାକୁ ଠିକ୍ କଥା ବୁଝାଇବା ଯେ ଏ ଯେଉଁ ତୁ ଚୋରୀ କରୁଛୁ, ତାହାର ଫଳ ତୋତେ କ'ଣ ମିଳିବ ।

ଏହି ବୟସ୍କ ଲୋକମାନେ ଘରେ ପସୁ-ପସୁ କୁହନ୍ତି, 'ଏ ଲୁହାର ଆଲମାରୀ ? ଏ ରେଡ଼ିଓ ? ଏହା ଏମିତି କାହିଁକି ? ସେମିତି କାହିଁକି ? ଏପରି ଝାମେଲା କରନ୍ତି । ଆରେ, କୌଣସି ଯୁବକ ସାଙ୍ଗରେ ବନ୍ଧୁତା କର । ଏହି ଯୁଗ ତ ବଦଳି ଚାଲିବ । ଏସବୁ ବିନା ଏମାନେ ବଞ୍ଚିବେ କିପରି ? କିଛି ନୂଆ ଦେଖିଲେ, ମାନେ ମୋହ ହେବ । ନୂତନତ୍ୱ ନ ଆସିବ ତେବେ ବଞ୍ଚିବେ କିପରି ? ଏପରି ନୂତନ ତ ଅନନ୍ତ ଥର ଆସିଛି ଏବଂ ଯାଇଛି, ସେଥିରେ ତୁମକୁ ଝାମେଲା କରିବା ଉଚିତ ନୁହେଁ । ତୁମକୁ ଅନୁକୂଳ ନ ଆସୁଛି ତେବେ ତୁମେ ନ କର । ଏହି ଆଇସ୍‌କ୍ରିମ୍ ଆମକୁ କୁହେ ନାହିଁ ଯେ ମୋ ଠାରୁ ଦୂରେଇ ରୁହ । ତୁମକୁ ଯଦି ଖାଇବାର ନାହିଁ ତେବେ ନ ଖାଅ । କିନ୍ତୁ ଏ ବୟସ୍କ ଲୋକମାନେ ସର୍ବଦା ତାହା ଉପରେ ବିରକ୍ତ ହେଉଥାନ୍ତି । ଏହି ମତଭେଦ ତ ଯୁଗ ପରିବର୍ତ୍ତନ ଯୋଗୁଁ ହେଉଛି । ଏହି ପିଲାମାନେ ତ ସମୟାନୁସାରେ ଚାଲିବେ । ମୋହ, ଅର୍ଥାତ୍ ନୂଆ ନୂଆ ଉତ୍ପନ୍ନ ହୁଏ ଏବଂ ନୂଆ ନୂଆ ହିଁ ଦେଖାଯାଏ । ମୁଁ ପିଲାଦିନରୁ ବୁଦ୍ଧି ଦ୍ୱାରା ବହୁତ ଭାବି ନେଇଥିଲି ଯେ ଏ ସଂସାର ଓଲଟା ଦିଗରେ ଯାଉଛି ନା ସଠିକ ଦିଗରେ ଯାଉଛି ଏବଂ ଏହା ମଧ୍ୟ ବୁଝା ପଡ଼ିଗଲା ଯେ, ଏହି ସଂସାରକୁ ପରିବର୍ତ୍ତନ କରିବାର କ୍ଷମତା କାହାରି ନାହିଁ । ତଥାପି ମୁଁ କ'ଣ କହୁଛି ନା ସମୟ ଅନୁସାରେ ଏଡ଼ଜଷ୍ଟ ହୋଇଯାଅ । ପୁଅ ନୂଆ ଟୋପିଟିଏ ପିନ୍ଧି ଆସେ,

ତେବେ ଏପରି କହିବ ନାହିଁ ଯେ 'ଏହାକୁ କେଉଁଠୁ ନେଇଆସିଲୁ ?' ତାହା ଅପେକ୍ଷା ଏଡ଼ଜଷ୍ଟ ହୋଇଯିବ ଯେ 'ଏତେ ଭଲ ଟୋପି କେଉଁଠୁ ଆଣିଲୁ ? କେତେ ଟଙ୍କା ଦେଇ ଆଣିଲୁ ? ବହୁତ ଶସ୍ତାରେ ମିଳିଲା ?' ଏହିପରି ଏଡ଼ଜଷ୍ଟ ହୋଇଯିବ ।

ଆମ ଧର୍ମ କ'ଣ କୁହେ ନା ଅସୁବିଧାରେ ସୁବିଧା ଦେଖ । ରାତିରେ ମୋତେ ବିଚାର ଆସିଲା ଯେ, 'ଏହି ଚାଦରଟି ମଇଳା ହୋଇଗଲାଣି' । କିନ୍ତୁ ପୁଣି ଏଡ଼ଜଷ୍ଟମେଣ୍ଟ ନେବାରୁ ଏତେ ନରମ ଅନୁଭବ ହେଲା ଯେ ଆଉ ପଚାର ନାହିଁ । ପଞ୍ଚେନ୍ଦ୍ରିୟ ଜ୍ଞାନ ଅସୁବିଧା ଦେଖାଏ ଏବଂ ଆତ୍ମଜ୍ଞାନ ସୁବିଧା ଦେଖାଏ । ଏଣୁ ଆତ୍ମାରେ ରୁହ ।

## ଦୁର୍ଗନ୍ଧ ସହିତ ଏଡ଼ଜଷ୍ଟମେଣ୍ଟ

ବାନ୍ଦ୍ରା(ମହାରାଷ୍ଟ୍ରର ଏକ ସହର)ର ନର୍ଦ୍ଦମାରୁ ଦୁର୍ଗନ୍ଧ ଆସେ, ତେବେ କ'ଣ ତା' ସହିତ ଲଢ଼ିବାକୁ ଯିବା ? ସେହିପରି ଏହି ମନୁଷ୍ୟ ବି ଦୁର୍ଗନ୍ଧ ବିକ୍ଷେପ କରନ୍ତି, ସେମାନଙ୍କୁ କ'ଣ କିଛି କହିବାକୁ ଯିବା ? ଦୁର୍ଗନ୍ଧ ଆସେ ସେସବୁକୁ ନର୍ଦ୍ଦମା କୁହାଯାଏ ଏବଂ ଯେଉଁଠୁ ସୁଗନ୍ଧ ଆସେ ତାହାକୁ ବଗିଚା କୁହାଯାଏ । ଯେଉଁମାନେ ଦୁର୍ଗନ୍ଧ ବିକ୍ଷେପ କରନ୍ତି, ସେ ସମସ୍ତେ କୁହନ୍ତି ଯେ 'ତୁମେ ଆମ ପ୍ରତି *ବୀତରାଗ* ରୁହ !'

ଏ ତ ଭଲ-ଖରାପ କହିବାରୁ ସେମାନେ ଆମକୁ ଦୁଃଖ ଦିଅନ୍ତି । ଆମକୁ ତ ଉଭୟଙ୍କୁ ସମାନ କରିଦେବାକୁ ହେବ । ଜଣକୁ 'ଭଲ' କହିଲେ, ସେଥିପାଇଁ ଅନ୍ୟ ଜଣକ 'ଖରାପ' ହେଲା । ଏଣୁ ସେ ପୁଣି ଦୁଃଖ ଦିଏ । କିନ୍ତୁ ଉଭୟଙ୍କର 'ମିକ୍ସଚର' କରିଦେବା, ତେବେ ପୁଣି ପ୍ରଭାବ ରୁହେ ନାହିଁ । 'ଏଡ଼ଜଷ୍ଟ ଏଭ୍ରିହ୍ୱେୟାର'ର ଆବିଷ୍କାର ମୁଁ କରିଛି । କେହି ସତ କହୁଛି, ତା' ସହିତ ମଧ୍ୟ ଏବଂ କେହି ମିଛ କହୁଛି ତା' ସହିତ ମଧ୍ୟ 'ଏଡ଼ଜଷ୍ଟ' ହୋଇ ଯାଅ । ମୋତେ ଯଦି କେହି କୁହେ ଯେ 'ତୁମର ବୁଦ୍ଧି ନାହିଁ ।' ତେବେ ମୁଁ ତୁରନ୍ତ ତା' ସହିତ ଏଡ଼ଜଷ୍ଟ ହୋଇଯିବି ଏବଂ କହିବି ଯେ 'ତାହା ତ ପ୍ରଥମରୁ ହିଁ ନଥିଲା । ଆଜି ତୁ କେଉଁଠୁ ଖୋଜିବାକୁ ଆସିଛୁ ? ତୋତେ ତ ଆଜି ଜଣା ପଡ଼ିଲା, ମାତ୍ର ମୁଁ ତ ପିଲା ଦିନରୁ ହିଁ ଜାଣିଛି ।' ଏପରି କହିବା ତେବେ ଝଂଝଟ୍ ତୁଟିଯିବ ନା ? ପୁଣି ସେ ଆମଠାରେ ବୁଦ୍ଧି ଖୋଜିବାକୁ ଆସିବ ହିଁ ନାହିଁ । ଏପରି ନ କରିବା ତେବେ 'ନିଜ ଘରେ'(ମୋକ୍ଷ) କେବେ ପହଞ୍ଚିବା ?

## ପତ୍ନୀ ସହ ଏଡ଼ଜଷ୍ଟମେଣ୍ଟ

**ପ୍ରଶ୍ନକର୍ତ୍ତା :** ଏଡ଼ଜଷ୍ଟ କିପରି ହେବା ଉଚିତ, ଟିକିଏ ବୁଝାଇ ଦିଅନ୍ତୁ ।

**ଦାଦାଶ୍ରୀ :** ଆମର କୌଣସି କାରଣବଶତଃ ବିଳମ୍ବ ହୋଇଗଲା, ଆଉ ପତ୍ନୀ କିଛି ୟାଡ୍ରୁ ସ୍ୟାଡ୍ରୁ କହିବାକୁ ଲାଗେ ଯେ, 'ଏତେ ଡେରିରେ ଆସୁଛ ? ମୋ ପାଖରେ ଏପରି ଚଳିବ ନାହିଁ ଆଉ ଏମିତି-ସେମିତି...', ତା' ମୁଣ୍ଡ ଖରାପ ହୋଇଯାଏ । ସେତେବେଳେ ତୁମେ କହିବ ଯେ 'ହଁ, ତୋ କଥା ସତ, ତୁ ଯଦି କହିବୁ ଫେରିଯିବି, ଆଉ ଯଦି କହିବୁ ଭିତରେ ଆସି ବସିବି ।' ଏହା ଶୁଣି ସେ କହିବ, 'ନା, ଯାଅ ନାହିଁ । ଏଠି ଶୋଇଯାଅ ଚୁପ୍‌ଚାପ୍' । କିନ୍ତୁ ପୁଣି ପଚାର, 'ତୁ କହିଲେ ଖାଇବି, ନଚେତ୍ ଶୋଇପଡ଼ିବି ।' ସେ କହିବ 'ନା, ଖାଇନିଅ' । ସେତେବେଳେ ତୁମକୁ ତା' କଥା ମାନି ଖାଇନେବା ଉଚିତ୍ । ଅର୍ଥାତ୍ ଏଡ଼ଜଷ୍ଟ ହୋଇଗଲ । ପୁଣି ସକାଳେ ଫାଷ୍ଟକ୍ଲାସ୍ ଚା' ଦେବ ଆଉ ଯଦି ଧମକାଇବ ତେବେ ସେ ମୁହଁ ଫୁଲାଇ ଚା'କପ୍ ଦେବ ଏବଂ ତିନିଦିନ ପର୍ଯ୍ୟନ୍ତ ଚାଲିବ ସେହି ମୁହଁଫୁଲା ।

## ଖାଅ ଖେଚିଡ଼ି ନା ହୋଟେଲର ପିଜ୍ଜା ?

ଏଡ଼ଜଷ୍ଟ ହେବା ନ ଆସିଲେ କ'ଣ କରନ୍ତି ? ଲୋକେ ୱାଇଫ୍ ସହ ଝଗଡ଼ା କରନ୍ତି ନା ?

**ପ୍ରଶ୍ନକର୍ତ୍ତା :** ହଁ ।

**ଦାଦାଶ୍ରୀ :** ଏମିତି ?! କ'ଣ ଭାଗବାଣ୍ଟ ପାଇଁ ? ୱାଇଫ୍ ସହିତ କ'ଣ ବାଣ୍ଟିବାର ଅଛି ? ସମ୍ପତ୍ତି ତ ଭାଗୀଦାରିରେ ଅଛି ।

**ପ୍ରଶ୍ନକର୍ତ୍ତା :** ସ୍ୱାମୀକୁ ଗୋଲାପଜାମୁ ଖାଇବାର ଥିବ ଆଉ ସ୍ତ୍ରୀ ଖେଚିଡ଼ି ବନାଏ, ତେବେ ପୁଣି ଝଗଡ଼ା ହୁଏ ।

**ଦାଦାଶ୍ରୀ :** ପୁଣି ଝଗଡ଼ା କରିବା ପରେ କ'ଣ ସେ ଗୋଲାପଜାମୁ ବନେଇବ ? ନା । ପରେ ମଧ୍ୟ ସେହି ଖେଚିଡ଼ି ହିଁ ଖାଇବାକୁ ପଡ଼େ !

**ପ୍ରଶ୍ନକର୍ତ୍ତା :** ପୁଣି ହୋଟେଲରୁ ପିଜ୍ଜା ମଗାନ୍ତି ।

**ଦାଦାଶ୍ରୀ :** ଏମିତି ?! ଅର୍ଥାତ୍ ଏହା ବି ଗଲା ଆଉ ତାହା ବି ଗଲା । ପିଜ୍ଜା

ଆସିଯାଏ, ନୁହେଁ ? ! କିନ୍ତୁ ଆମ ଗୋଲାପଜାମୁ ତ ଗଲା ନା ? ତା'ଅପେକ୍ଷା ଯଦି ତୁମେ ଓ୍ୱାଇଫ୍‌କୁ କହିଥାନ୍ତ ଯେ, 'ତୁମକୁ ଯାହା ଅନୁକୂଳ ହେଉଛି ତାହା ବନାଅ ।' ତା'କୁ ବି କେଉଁ ଦିନ ଖୁଆଇବାର ଭାବନା ତ ହେବ ନା ! ସେ ଖାଇବ ନାହିଁ କି ? ସେତେବେଳେ ତୁମେ କହିବ 'ତୁମକୁ ଯାହା ଅନୂକୁଳ ହେଉଛି ତାହା ବନାଅ' । ସେ କହିବ 'ନା, ତୁମକୁ ଯାହା ପସନ୍ଦ, ସେଇଆ ବନେଇବି ।' ସେତେବେଳେ ତୁମେ କହିବ ଯେ 'ଗୋଲାପଜାମୁ ବନାଅ' । କିନ୍ତୁ ଯଦି ତୁମେ ପ୍ରଥମରୁ ଗୋଲାପଜାମୁ ବନାଇବାକୁ କହିବ ତେବେ ସେ କହିବ, 'ନା, ମୁଁ ତ ଖେଚିଡ଼ି ହିଁ ବନେଇବି' ।

**ପ୍ରଶ୍ନକର୍ତ୍ତା :** ଏଭଳି ମତଭେଦ ବନ୍ଦ କରିବା ପାଇଁ ଆପଣ କେଉଁ ରାସ୍ତା ଦେଖାନ୍ତି ?

**ଦାଦାଶ୍ରୀ :** ମୁଁ ତ ଏହି ରାସ୍ତା ଦେଖାଏ ଯେ 'ଏଡ଼ଜଷ୍ଟ ଏଭ୍ରିହ୍ୱେୟାର' । ସେ ଯଦି କୁହେ ଯେ, 'ଖେଚିଡ଼ି ବନାଇବାର ଅଛି' ତେବେ ତୁମେ 'ଏଡ଼ଜଷ୍ଟ' ହୋଇଯାଅ । ଏବଂ ଯଦି ତୁମେ କୁହ ଯେ 'ମୋତେ ବାହାରକୁ ଯିବାର ଅଛି, ସତ୍‌ସଙ୍ଗ ଯିବାର ଅଛି', ତେବେ ତା'କୁ (ପତ୍ନୀକୁ) 'ଏଡ଼ଜଷ୍ଟ' ହୋଇଯିବା ଉଚିତ । ଯିଏ ପ୍ରଥମେ କୁହେ, ତା' ସହିତ ଏଡ଼ଜଷ୍ଟ ହୋଇଯାଅ ।

**ପ୍ରଶ୍ନକର୍ତ୍ତା :** ତେବେ ତ ପ୍ରଥମେ କହିବା ପାଇଁ ଝଗଡ଼ା ହେବ ।

**ଦାଦାଶ୍ରୀ :** ହଁ, ଏମିତି କର । କିନ୍ତୁ ତା' ସହିତ ଏଡ଼ଜଷ୍ଟ ହୋଇଯାଅ । କାରଣ ତୁମ ହାତରେ ସତ୍ତା(କ୍ଷମତା) ନାହିଁ । ଏହି ସତ୍ତା କାହା ହାତରେ ଅଛି, ତାହା ମୁଁ ଜାଣିଛି । ତେବେ ପୁଣି ଏଥିରେ 'ଏଡ଼ଜଷ୍ଟ' ହୋଇଯିବାରେ ତୁମକୁ କିଛି ଅସୁବିଧା ଅଛି ଭାଇ ?

**ପ୍ରଶ୍ନକର୍ତ୍ତା :** ନା, ଆଦୌ ନାହିଁ ।

**ଦାଦାଶ୍ରୀ :** ଭଉଣୀ, ତୁମର କିଛି ଅସୁବିଧା ଅଛି ?

**ପ୍ରଶ୍ନକର୍ତ୍ତା :** ନା ।

**ଦାଦାଶ୍ରୀ :** ତେବେ ପୁଣି ତାହାର *ନିକାଲ* କରି ଦିଅ ନା ! 'ଏଡ଼ଜଷ୍ଟ ଏଭ୍ରିହ୍ୱେୟାର', ଏଥିରେ କୌଣସି ଅସୁବିଧା ଅଛି ?

**ପ୍ରଶ୍ନକର୍ତ୍ତା :** ନା, ଆଦୌ ନାହିଁ ।

**ଦାଦାଶ୍ରୀ :** ଯଦି ସେ ପ୍ରଥମେ କୁହେ ଯେ, ଆଜି ପିଆଜର ପକୁଡ଼ି, ଲଡ୍ଡୁ, ତରକାରୀ ସବୁ ବନାଅ, ତେବେ ତୁମେ ଏଡ଼ଜଷ୍ଟ ହୋଇଯାଅ ଏବଂ ତୁମେ ଯଦି କୁହ ଆଜି ଶୀଘ୍ର ଶୋଇବାର ଅଛି ତେବେ ତାଙ୍କୁ ଏଡ଼ଜଷ୍ଟ ହୋଇଯିବା ଉଚିତ୍ । ତୁମକୁ(ପତିକୁ) କୌଣସି ସାଙ୍ଗ ନିକଟକୁ ଯିବାର ଥିଲେ ମଧ୍ୟ ତାକୁ ବାତିଲ୍ କରି ଶୀଘ୍ର ଶୋଇଯିବ । କାରଣ ସାଙ୍ଗ ସହିତ ଝାମେଲା ହେଲେ ଦେଖାଯିବ, କିନ୍ତୁ ଏଠି ଘରେ ଝାମେଲା ହେବାକୁ ଦିଅନାହିଁ । ସାଙ୍ଗଙ୍କ ସହିତ ସମ୍ବନ୍ଧ ଭଲ ରଖିବାକୁ ଯାଇ ଘରେ ଅଶାନ୍ତି ସୃଷ୍ଟି କରନ୍ତି, ଏଭଳି ନହେବା ଉଚିତ୍ । ଅର୍ଥାତ୍ ସେ ପ୍ରଥମେ କହିଲେ ତୁମକୁ ଏଡ଼ଜଷ୍ଟ ହୋଇଯିବା ଉଚିତ୍ ।

**ପ୍ରଶ୍ନକର୍ତ୍ତା :** କିନ୍ତୁ ତାଙ୍କୁ ଆଠଟାରେ କୌଣସି ମିଟିଙ୍ଗ୍‌କୁ ଯିବାର ଥିବ ଆଉ ପତ୍ନୀ କୁହେ ଯେ, 'ଏବେ ଶୋଇ ଯାଅ' । ତେବେ ପୁଣି ସେ କ'ଣ କରିବେ ?

**ଦାଦାଶ୍ରୀ :** ଏପରି କଳ୍ପନା କରିବା କଥା ନୁହେଁ । ପ୍ରକୃତିର ନିୟମ ଏପରି ଯେ 'ହ୍ୱେୟାର୍ ଦେୟାର୍ ଇଜ୍ ଏ ୱିଲ୍, ଦେୟାର୍ ଇଜ୍ ଏ ୱେ'(ଇଚ୍ଛା ଥିଲେ ଉପାୟ ବଳେ ବଳେ ଆସେ) ! କଳ୍ପନା କଲେ ବିଗିଡ଼ିବ । ସେଦିନ ସେ ହିଁ କହିବେ ଯେ 'ତୁମେ ଜଲ୍‌ଦି ଯାଅ, ଜଲ୍‌ଦି ଯାଅ' ନିଜେ ଗ୍ୟାରେଜ୍ ପର୍ଯ୍ୟନ୍ତ ଛାଡ଼ିବାକୁ ଆସିବେ, କଳ୍ପନା କଲେ ସବୁ ବିଗିଡ଼େ । ସେଥିପାଇଁ ଗୋଟିଏ ବହିରେ ଲେଖା ହୋଇଛି 'ହ୍ୱେୟାର୍ ଦେୟାର୍ ଇଜ୍ ଏ ୱିଲ୍, ଦେୟାର୍ ଇଜ୍ ଏ ୱେ' ପାଳନ କରିବ ତ ବହୁତ ହୋଇଗଲା । ପାଳନ କରିବ ନା ?

**ପ୍ରଶ୍ନକର୍ତ୍ତା :** ହଁ, ଆଜ୍ଞା ।

**ଦାଦାଶ୍ରୀ :** ପ୍ରୋମିସ୍(ଶପଥ) ଦିଅ । ଆରେ ବାଃ ! ଯାକୁ କୁହନ୍ତି ଶୁରବୀର ! ପ୍ରୋମିସ୍ ଦେଲା !

## ଭୋଜନରେ ଏଡ଼ଜଷ୍ଟମେଣ୍ଟ

ବ୍ୟବହାର ପୂରା କଲା କାହାକୁ କହିବା ନା, ଯିଏ 'ଏଡ଼ଜଷ୍ଟ ଏଭ୍ରିହ୍ୱେୟାର' ହେଲା ! ଏବେ ଡେଭଲପ୍‌ମେଣ୍ଟ(ବିକାଶ)ର ସମୟ ଆସିଛି । ମତଭେଦ ହେବାକୁ

ଦେବ ନାହିଁ । ସେଥିପାଇଁ ଏବେ ଲୋକଙ୍କୁ ମୁଁ ସୂତ୍ର ଦେଇଛି, 'ଏଡ଼ଜଷ୍ଟ ଏଭ୍ରିହ୍ୱେୟାର' ! ଏଡ଼ଜଷ୍ଟ, ଏଡ଼ଜଷ୍ଟ, ଏଡ଼ଜଷ୍ଟ ! ତରକାରୀ ଲୁଣିଆ ହୋଇଛି, ତେବେ ବୁଝିନେବ ଯେ ଦାଦାଜୀ ଏଡ଼ଜଷ୍ଟମେଣ୍ଟ ନେବା ପାଇଁ କହିଛନ୍ତି । ପୁଣି ଅଳ୍ପ ତରକାରୀ ଖାଇନେବ । ହଁ, ଆଚାର ମନେ ପଡ଼େ, ତେବେ ମାଗିନେବ ଯେ ଅଳ୍ପ ଆଚାର ଆଣିଦିଅ । କିନ୍ତୁ ଝଗଡ଼ା ନୁହେଁ, ଘରେ ଝଗଡ଼ା ନ ହେବା ଉଚିତ । ନିଜେ କୌଣସି ଜାଗାରେ ଅସୁବିଧାରେ ଫସିଯାଏ, ତେବେ ସେଠି ନିଜେ ହିଁ ଏଡ୍‌ଜଷ୍ଟମେଣ୍ଟ କରିନେବ, ତେବେ ମଧ୍ୟ ସଂସାର ସୁନ୍ଦର ଲାଗିବ ।

## ପସନ୍ଦ ହେଉନାହିଁ, ତଥାପି ପୂରା କର

ତୋ ସହିତ ଯିଏ-ଯିଏ ଡ଼ିସଏଡ଼୍‌ଜଷ୍ଟ ହେବା ପାଇଁ ଆସନ୍ତି, ସେମାନଙ୍କ ସହିତ ତୁ ଏଡ଼ଜଷ୍ଟ ହୋଇ ଯା । ଦୈନିକ ଜୀବନରେ ଯଦି ଶାଶୁ-ବୋହୂଙ୍କ ମଧ୍ୟରେ ଅବା ସାନଯାଆ-ବଡ଼ଯାଆଙ୍କ ମଧ୍ୟରେ ଡିସଏଡ଼୍‌ଜଷ୍ଟମେଣ୍ଟ ହେଉଥିବ, ତେବେ ଯାହାକୁ ଏହି ସଂସାରର ଘଟଣାଚକ୍ରରୁ ମୁକୁଳିବାର ଥିବ, ତା'କୁ ଏଡ଼ଜଷ୍ଟ ହୋଇଯିବା ହିଁ ଉଚିତ । ପତି-ପତ୍ନୀଙ୍କ ମଧ୍ୟରୁ ଯଦି କେହି ଜଣେ ଫାଟ ସୃଷ୍ଟି କରେ, ତେବେ ଅନ୍ୟ ଜଣଙ୍କୁ ଯୋଡ଼ି ନେବା ଉଚିତ, ତେବେ ଯାଇ ସମ୍ବନ୍ଧ ପୂରା ହେବ ଏବଂ ଶାନ୍ତି ରହିବ । ଯାହାକୁ ଏଡ଼ଜଷ୍ଟମେଣ୍ଟ ନେବା ଆସେ ନାହିଁ, ତା'କୁ ଲୋକେ ମେଣ୍ଟାଲ୍ କୁହନ୍ତି । ଏହି ରିଲେଟିଭ୍(ଆପେକ୍ଷିକ) ସତ୍ୟରେ ଆଗ୍ରହ, ଜିଦ୍ କରିବାର ବିଲକୁଲ ବି ଆବଶ୍ୟକତା ନାହିଁ । 'ମଣିଷ' ତ କିଏ, ନା ଯିଏ ଏଭ୍ରିହ୍ୱେୟାର ଏଡ଼ଜଷ୍ଟେବଲ୍ ହୁଏ । ଚୋର ସହ ମଧ୍ୟ ଏଡ଼ଜଷ୍ଟ ହୋଇଯିବା ଉଚିତ ।

## ସୁଧାରିବା ନା ଏଡ଼ଜଷ୍ଟ ହୋଇଯିବା ?

ପ୍ରତ୍ୟେକ କଥାରେ ଆମେ ସାମନାବାଲା ସହିତ ଏଡ଼ଜଷ୍ଟ ହୋଇଗଲେ କେତେ ସରଳ ନ ହେବ ! ଆମକୁ ସାଥିରେ କ'ଣ ନେଇଯିବାର ଅଛି ? କେହି କହିବ ଯେ, 'ଭାଇ, ସ୍ତ୍ରୀକୁ ସିଧା କରିଦିଅ ।' 'ଆରେ, ତା'କୁ ସିଧା କରିବାକୁ ଯିବୁ ତେବେ ତୁ ତେଢ଼ା ହୋଇଯିବୁ ।' ଏଣୁ ସ୍ତ୍ରୀକୁ ସିଧା କରିବାକୁ ଯିବ ନାହିଁ, ଯେପରି ମଧ୍ୟ ହେଉ ତା'କୁ କରେକ୍ଟ କହିବ । ତୁମର ତା'ସହିତ ଚିରଦିନର ନେବା-ଦେବା ଥାଆନ୍ତା ତେବେ ଅଲଗା କଥା, ମାତ୍ର ଏଠି ତ ଗୋଟିଏ ଜନ୍ମ, ପରେ ଜଣା ନାହିଁ କୁଆଡ଼େ

ହଜିଯିବ ! ଦୁହିଁଙ୍କ ମୃତ୍ୟୁକାଳ ଅଲଗା, ଦୁହିଁଙ୍କ କର୍ମ ଅଲଗା ! କିଛି ନେବାର ବି ନାହିଁ-ଦେବାର ବି ନାହିଁ ! ଏଠାରୁ ସେ କାହା ପାଖକୁ ଯିବ, ତାହାର କ'ଣ ଠିକଣା ? ତୁମେ ତା'କୁ ସିଧା କରିବ ଆଉ ପରଜନ୍ମରେ ଯିବ ଅନ୍ୟ କାହା ଭାଗକୁ !

ଏଣୁ ନା ତ ତୁମେ ତା'କୁ ସିଧା କର ଆଉ ନା ସେ ତୁମକୁ ସିଧା କରୁ । ଯାହାବି ମିଳିଛି, ସୁନା ପରି । ପ୍ରକୃତି କେବେ ମଧ୍ୟ କାହାର ସିଧା ହୋଇପାରିବ ନାହିଁ । କୁକୁର ଲାଙ୍ଗୁଡ଼ ବଙ୍କାକୁ ବଙ୍କା ହିଁ ରୁହେ । ଏଣୁ ତୁମେ ସାବଧାନ ରହି ଚାଲ । ଯେମିତି ବି ଅଛି ଠିକ ଅଛି, 'ଏଡ଼ଜଷ୍ଟ ଏଭ୍ରିହ୍ୱେୟାର' ।

## ପତ୍ନୀ ହେଉଛି 'କାଉଣ୍ଟର ୱେଟ୍'

**ପ୍ରଶ୍ନକର୍ତ୍ତା :** ମୁଁ ୱାଇଫ୍ ସହିତ ଏଡ଼ଜଷ୍ଟ ହେବାକୁ ବହୁତ ଚେଷ୍ଟା କରୁଛି, କିନ୍ତୁ ଏଡ଼ଜଷ୍ଟମେଣ୍ଟ ହୋଇପାରୁ ନାହିଁ ।

**ଦାଦାଶ୍ରୀ :** ଏ ସବୁ ହିସାବ ଅନୁଯାୟୀ ଅଟେ ! ବଙ୍କା ବୋଲ୍ଟ ଆଉ ବଙ୍କା ନଟ୍, ସେଠି ପେଚ ସିଧା ଘୁରାଇଲେ କିପରି ଚଳିବ ? ତୁମକୁ ଏପରି ଲାଗୁଥିବ ଯେ ଏ ସ୍ତ୍ରୀ ଜାତି ଏପରି କାହିଁକି ? କିନ୍ତୁ ସ୍ତ୍ରୀ ଜାତି ତ ତୁମର 'କାଉଣ୍ଟର ୱେଟ୍'(ପ୍ରତିଭାର) ଅଟେ । ଯେତେ ତୁମର ଦୋଷ, ସେତେ ସେ ତେଢ଼ା, ଏଥିପାଇଁ ତ ସବୁ 'ବ୍ୟବସ୍ଥିତ' ଅଟେ, ଏପରି ମୁଁ କହିଛି ନା ?

**ପ୍ରଶ୍ନକର୍ତ୍ତା :** ସମସ୍ତେ ଆମକୁ ସିଧା କରିବାକୁ ଆସିଛନ୍ତି, ଏପରି ଲାଗୁଛି ।

**ଦାଦାଶ୍ରୀ :** ତୁମକୁ ସିଧା କରିବା ହିଁ ଦରକାର । ସିଧା ହେବା ବିନା ଦୁନିଆ ଚାଲେ ନାହିଁ ନା ? ସିଧା ହେବ ନାହିଁ ତେବେ ପୁଣି ବାପ କିପରି ହେବ ? ସିଧା ହେବ, ତେବେଯାଇ ବାପା ହେବ । ସ୍ତ୍ରୀ ଜାତି କିଛି ଏପରି ଅଟେ ଯେ ତାହା ବଦଳିବ ନାହିଁ, ସେଥିପାଇଁ ଆମକୁ ବଦଳିବାକୁ ହେବ । ତାହା ସହଜ ଜାତି ଅଟେ, ତାହା ବଦଳିଯିବ, ଏପରି ନୁହେଁ ।

ୱାଇଫ୍, ତାହା କି ଜିନିଷ ଅଟେ ?

**ପ୍ରଶ୍ନକର୍ତ୍ତା :** ଆପଣ କୁହନ୍ତୁ ।

**ଦାଦାଶ୍ରୀ :** ୱାଇଫ୍ ଇଜ୍ ଦ କାଉଣ୍ଟର୍ ୱେଟ୍ ଅଫ୍ ମ୍ୟାନ(ସ୍ୱାମୀ) । ସେ

କାଉଣ୍ଟର୍ ଓ୍ୱେଟ୍ ଯଦି ନ ଥିବ ତେବେ ମଣିଷ(ପୁରୁଷ) ଝୁଣ୍ଟି ପଡ଼ିବ ।

**ପ୍ରଶ୍ନକର୍ତ୍ତା :** ଏହା ବୁଝି ହେଲା ନାହିଁ ।

**ଦାଦାଶ୍ରୀ :** ଏ ଇଞ୍ଜିନରେ କାଉଣ୍ଟର୍ ଓ୍ୱେଟ୍ ରଖାଯାଏ, ନଚେତ୍ ଇଞ୍ଜିନ୍ ଚାଲୁ ଚାଲୁ ଭାଙ୍ଗିଯିବ । ସେହିପରି ପୁରୁଷର କାଉଣ୍ଟର୍ ଓ୍ୱେଟ୍ ସ୍ତ୍ରୀ ଅଟେ । ସ୍ତ୍ରୀ ଥିବ ତେବେ ଭାଙ୍ଗିବ(ଝୁଣ୍ଟିବ) ନାହିଁ । ନଚେତ୍ ଧାଁ-ଦୌଡ଼ କରି ମଧ୍ୟ କୌଣସି ଠିକଣା ରୁହନ୍ତା ନାହିଁ, ଆଜି ଏଠି ତ କାଲି କେଉଁଠୁ କେଉଁଠିକି ଚାଲି ଯାଇଥାନ୍ତା । ଏ ସ୍ତ୍ରୀ ଅଛି ସେଥିପାଇଁ ସେ ଘରକୁ ଆସୁଛି, ନଚେତ୍ ସେ କ'ଣ ଘରକୁ ଆସନ୍ତା ?

**ପ୍ରଶ୍ନକର୍ତ୍ତା :** ଆସନ୍ତା ନାହିଁ ।

**ଦାଦାଶ୍ରୀ :** ସ୍ତ୍ରୀ ତା'ର କାଉଣ୍ଟର ଓ୍ୱେଟ୍ ଅଟେ ।

## ମତଭେଦ, ଶେଷରେ ବିନାଶୀ

**ପ୍ରଶ୍ନକର୍ତ୍ତା :** ସକାଳର ଘର୍ଷଣ(ମତଭେଦ) ଦ୍ୱିପ୍ରହରକୁ ଭୁଲିଯାଉ ଏବଂ ସନ୍ଧ୍ୟାରେ ପୁଣି ନୂଆ ହୁଏ ।

**ଦାଦାଶ୍ରୀ :** ମୁଁ ଏହା ଜାଣେ ଯେ, ଘର୍ଷଣ କେଉଁ ଶକ୍ତି ଦ୍ୱାରା ହୁଏ । ସେ ଓଲଟା କୁହେ, ସେଥିରେ କେଉଁ ଶକ୍ତି କାର୍ଯ୍ୟ କରେ ? କହିଦେବା ପରେ ପୁଣି 'ଏଡ଼ଜଷ୍ଟ' ହୋଇ ଯାଆନ୍ତି, ତାହା ସବୁ ଜ୍ଞାନ ଦ୍ୱାରା ବୁଝିହେବ, ଏପରି ଅଟେ । ତଥାପି ସଂସାରରେ 'ଏଡ଼ଜଷ୍ଟ' ହେବାର ଅଛି । କାହିଁକିନା ପ୍ରତ୍ୟେକ ଜିନିଷ ବିନାଶୀ ଅଟେ । ଆଉ ମାନିନିଅ ସେ ଜିନିଷ ଲମ୍ବା ସମୟ ପର୍ଯ୍ୟନ୍ତ ଚାଲେ (ଆଉ ତୁମେ ଏଡ଼ଜଷ୍ଟ କରୁନାହଁ) ତଥାପି ତୁମେ ତା'କୁ 'ହେଲ୍ପ' କରୁନାହଁ, ଓଲଟା ଅଧିକ କ୍ଷତି ପହଞ୍ଚାଉଛ । ତୁମେ ସ୍ୱୟଂ ନିଜର ଏବଂ ସାମ୍ନାବ୍ୟକ୍ତିର ମଧ୍ୟ କ୍ଷତି କରୁଅଛ ।

## ନଚେତ୍ ପ୍ରାର୍ଥନାର 'ଏଡ଼ଜଷ୍ଟମେଣ୍ଟ'

**ପ୍ରଶ୍ନକର୍ତ୍ତା :** ସାମନାବ୍ୟକ୍ତିକୁ ବୁଝାଇବା ପାଇଁ ମୁଁ ନିଜର ପୁରୁଷାର୍ଥ କଲି, ପରେ ସେ ବୁଝିବ-ନବୁଝିବ, ତାହା ତା'ର ପୁରୁଷାର୍ଥ ?

**ଦାଦାଶ୍ରୀ :** ନିଜର ଦାୟିତ୍ୱ କେବଳ ଏତିକି ଯେ ଆମେ ତା'କୁ ବୁଝାଇବା । ପରେ ସେ ନ ବୁଝେ, ତେବେ ତାହାର ଉପାୟ ନାହିଁ । ପରେ ତୁମେ ଏତିକି କହିବ

ଯେ, 'ହେ ଦାଦା ଭଗବାନ(ସେ ବ୍ୟକ୍ତି ମଧ୍ୟରେ ଥିବା ଭଗବାନ) ! ୟାଙ୍କୁ ସଦ୍‌ବୁଦ୍ଧି ଦିଅନ୍ତୁ' । ଏତିକି କହିବା ଉଚିତ । ତା'ଙ୍କୁ ଏମିତି ମଝିରେ ଝୁଲେଇକି ଛାଡ଼ିପାରିବା ନାହିଁ । ଏହା କୌଣସି ଗପ୍ପ ନୁହେଁ । ଏହା 'ଦାଦାଜୀ'ଙ୍କ 'ଏଡ୍‌ଜଷ୍ଟମେଣ୍ଟ'ର ବିଜ୍ଞାନ ଅଟେ, ଗଜବ ଅଟେ ଏହି 'ଏଡ୍‌ଜଷ୍ଟମେଣ୍ଟ' । ଆଉ ଯେଉଁଠି 'ଏଡ୍‌ଜଷ୍ଟ' ନ ହେବା ସେଠି ତାହାର ସ୍ୱାଦ ତ ଆସୁଥିବ ତୁମକୁ ? 'ଡିସ୍-ଏଡ୍‌ଜଷ୍ଟମେଣ୍ଟ' ହିଁ ମୂର୍ଖତା ଅଟେ । କାରଣ ସେ ଭାବୁଥାଏ ଯେ ମୁଁ ମୋର ସ୍ୱାମୀତ୍ୱ ଛାଡ଼ିବି ନାହିଁ ଏବଂ ମୋର ହିଁ *ଚଲଣ*(କଥାର ପ୍ରାଧାନ୍ୟତା) ରହିବା ଦରକାର । ଏପରି ମାନିଲେ ଜୀବନ ସାରା ଭୋକରେ ମରିବ ଆଉ ଦିନ ଆସିବ ଥାଳିରେ 'ପଏଜନ୍'(ବିଷ) ଆସି ପଡ଼ିବ ! ସହଜ ରୂପେ ଯାହା ଚାଲୁଛି, ତାହା ଚାଲିବାକୁ ଦିଅ ! ଏହା ତ କଳିଯୁଗ ଅଟେ । କିପରି ଏହି ବାତାବରଣ ? ! ଏଣୁ ଯେତେବେଳେ ସ୍ତ୍ରୀ କୁହେ ଯେ, 'ତୁମେ ଅଯୋଗ୍ୟ ଅଟ ।' ତେବେ କହିବ, 'ବହୁତ ଭଲ ।'

## ଟେଢ଼ାଙ୍କ ସହିତ ଏଡ୍‌ଜଷ୍ଟ ହୋଇଯାଅ

**ପ୍ରଶ୍ନକର୍ତ୍ତା :** ବ୍ୟବହାରରେ ରହିବାର ଅଛି, ଏଣୁ 'ଏଡ୍‌ଜଷ୍ଟମେଣ୍ଟ' ଏକ ପକ୍ଷୀୟ ତ ନ ହେବା ଉଚିତ ନା ?

**ଦାଦାଶ୍ରୀ :** ବ୍ୟବହାର ତ ତାହାକୁ କୁହାଯିବ ଯେ, ଏଡ୍‌ଜଷ୍ଟ ହୋଇଯିବା ଯାଦ୍ୱାରା ପଡ଼ୋଶୀ ମଧ୍ୟ କହିବେ ଯେ 'ସମସ୍ତଙ୍କ ଘରେ ଝଗଡ଼ା ହୁଏ, କିନ୍ତୁ ଏହି ଘରେ ଝଗଡ଼ା ନାହିଁ ।' ତା'ର ବ୍ୟବହାର ସର୍ବୋତ୍ତମ କୁହାଯିବ । ଯାହା ସହିତ ମେଳ ଖାଏ ନାହିଁ, ସେହିଠାରେ ହିଁ ଶକ୍ତି ବିକଶିତ କରିବାର ଅଛି । ଅନୁକୂଳ ହେଲେ, ସେଠାରେ ତ ଶକ୍ତି ଅଛି । ପ୍ରତିକୂଳ ଲାଗିବା, ତାହା ତ ଦୁର୍ବଳତା ଅଟେ । ମୋତେ ସମସ୍ତଙ୍କ ସହିତ କାହିଁକି ଅନୁକୂଳତା ରୁହେ ? ଯେତେ ଏଡ୍‌ଜଷ୍ଟମେଣ୍ଟ ନେବ, ସେତେ ଶକ୍ତି ବଢ଼ିବ ଏବଂ କୁଶକ୍ତିଗୁଡ଼ିକ ନଷ୍ଟ ହୋଇଯିବ । ଉଚିତ୍ ବିଚାର ସେତେବେଳେ ଆସିବ, ଯେତେବେଳେ ସମସ୍ତ ଓଲଟା ବିଚାରରେ ତାଲା ଲାଗିଯିବ ।

ନରମ ସ୍ୱଭାବବାଲାଙ୍କ ସହିତ ତ ଯେ କେହି ମଧ୍ୟ ଏଡ୍‌ଜଷ୍ଟ କରିନେବ କିନ୍ତୁ ଟେଢ଼ା, କଠୋର, ଗରମ ମିଜାଜ ଲୋକଙ୍କ ସହିତ, ସମସ୍ତଙ୍କ ସହିତ ଏଡ୍‌ଜଷ୍ଟ ହେବା ଆସିଲା ତେବେ କାମ ହୋଇଗଲା । କେତେ ବି ବେହିୟା-ଅଯୋଗ୍ୟ ମଣିଷ ହୋଇଥାଉ

ନା କାହିଁକି, ତଥାପି ତା’ ସହ ଏଡ଼ଜଷ୍ଟ ହେବା ଆସିଯାଏ, ମୁଣ୍ଡ ଗରମ ହୁଏ ନାହିଁ, ତାହାଲେ ବୁଝିବା ଯେ ହଁ ଠିକ। ରାଗିଗଲେ ଚଳିବ ନାହିଁ। ସଂସାରର କୌଣସି ଜିନିଷ ଆମକୁ ‘ଫିଟ୍’ ହେବ ନାହିଁ, ଆମେ ହିଁ ତା’ ସହିତ ‘ଫିଟ୍’ ହୋଇଯିବା ତେବେ ଦୁନିଆ ସୁନ୍ଦର ଆଉ ତା’କୁ ‘ଫିଟ୍’ କରିବାକୁ ଯିବା ତେବେ ଦୁନିଆ ତେଢ଼ା। ଏଣୁ ଏଡ଼ଜଷ୍ଟ ଏଭ୍ରିହ୍ୱେୟାର! ତୁମେ ତା’ ସହିତ ‘ଫିଟ୍’ ହୋଇଯିବ ତେବେ କୌଣସି ଅସୁବିଧା ନାହିଁ।

## ଡୋଣ୍ଟ ସି ଲ, ସେଟଲ୍

‘ଜ୍ଞାନୀ’ ତ, ସାମନାବାଲା ତେଢ଼ା ହୋଇଥିଲେ ମଧ୍ୟ ତା’ ସହିତ ଏଡ଼ଜଷ୍ଟ ହୋଇଯାଆନ୍ତି। ‘ଜ୍ଞାନୀ ପୁରୁଷ’ଙ୍କୁ ଦେଖିକରି ଚାଲିବ ତେବେ ସମସ୍ତ ପ୍ରକାରର ଏଡ଼ଜଷ୍ଟମେଣ୍ଟ ନେବା ଶିଖିଯିବ। ଏହାର ପଛର ସାଇନ୍ସ କ’ଣ କୁହେ ନା, ବୀତରାଗ ହୋଇଯାଅ, ରାଗ-ଦ୍ୱେଷ କରନାହିଁ। ଏ ତ ଭିତରେ କିଛି ଆସକ୍ତି ରହିଯାଉଛି, ସେଥିପାଇଁ ମାଡ଼ ପଡୁଛି। ବ୍ୟବହାରରେ ଯେଉଁମାନେ ଏକ ପକ୍ଷୀୟ ନିସ୍ପୃହ ହୋଇ ସାରିଥିବେ, ସେମାନଙ୍କୁ ତେଢ଼ା କୁହାଯାଏ। ତୁମର ଆବଶ୍ୟକତା ଥିବ, ସେତେବେଳେ ସାମନାବାଲା ତେଢ଼ା ହୋଇଥିଲେ ମଧ୍ୟ ତା’କୁ ମନାଇ ନେବା ଉଚିତ୍। ଷ୍ଟେସନରେ କୁଲିର ଆବଶ୍ୟକତା ଥିବ ଆଉ ସେ ଦ୍ୱିଧା ପ୍ରକାଶ କରୁଥିବ, ତଥାପି ତା’କୁ ଚାରି ଅଣା ଅଧିକ ଦେଇ ମନାଇ ନେବାକୁ ହେବ ଆଉ ମନାଇବା ନାହିଁ ତେବେ ସେ ବ୍ୟାଗ୍ ଆମକୁ ନିଜକୁ ହିଁ ଉଠାଇବାକୁ ପଡ଼ିବ ନା!

ଡୋଣ୍ଟ ସି ଲ’ଜ ପ୍ଲିଜ ସେଟଲ୍ (Don't see Law's, please settle)। ସାମନାବାଲାକୁ ସେଟଲ୍‌ମେଣ୍ଟ ନେବାକୁ କହିବା, ‘ତୁମେ ଏମିତି କର, ସେମିତି କର’ ଏପରି କହିବା ପାଇଁ ସମୟ କେଉଁଠି ଅଛି? ସାମନାବାଲାର ଶହେ ଭୁଲ ଥାଉ, ତଥାପି ତୁମକୁ ତ ନିଜର ହିଁ ଭୁଲ ବୋଲି କହି ଆଗକୁ ବଢ଼ିଯିବାର ଅଛି। ଏହି କାଳରେ କ’ଣ ଲ(ନିୟମ) ଦେଖାଯାଏ? ଏହା ତ ଶେଷ ସୀମାରେ ପହଞ୍ଚି ସାରିଲାଣି। ଯେଉଁଠି ଦେଖିଲେ ସେଠି ଧାଁ-ଦୌଡ଼, ଅସ୍ତବ୍ୟସ୍ତ! ଲୋକେ ବିଭ୍ରାନ୍ତ ହୋଇଗଲେଣି। ଘରକୁ ଗଲେ ୱାଇଫ୍‌ର ଅଭିଯୋଗ, ପିଲାମାନଙ୍କର

ଅଭିଯୋଗ, ଚାକିରୀକୁ ଗଲେ ମାଲିକର ଅଭିଯୋଗ, ଟ୍ରେନରେ ଗଲେ ଭିଡ଼ରେ ଧକ୍କା ଖାଏ । କେଉଁଠି ବି ଶାନ୍ତି ନାହିଁ । ଶାନ୍ତି ତ ଦରକାର ନା ? କେହି ଲଢ଼ିବାକୁ ଲାଗେ ତେବେ ତା' ପ୍ରତି ଦୟା ଆସିବା ଉଚିତ୍ କି 'ଆରେ, ବିଚରା କେତେ ଦୁଶ୍ଚିନ୍ତାରେ ଥିବ ଯାଦ୍ୱାରା ଝଗଡ଼ା କରିଦେଲା !' ଯେଉଁମାନେ ଆକୁଳିତ ହୁଅନ୍ତି(ରାଗିଯାନ୍ତି), ସେମାନେ ସବୁ ଦୁର୍ବଳ ଅଟନ୍ତି ।

## ଅଭିଯୋଗ ? ନା, 'ଏଡ଼ଜଷ୍ଟ'

ଘରେ ମଧ୍ୟ 'ଏଡ଼ଜଷ୍ଟ' ହେବା ଆସିବା ଉଚିତ । ଆମେ ସତ୍‌ସଙ୍ଗରୁ ଡେରିରେ ଘରକୁ ଯିବା ତେବେ ଘରଲୋକେ କ'ଣ କହିବେ ? 'ଅଳ୍ପ-ବହୁତ ତ ସମୟର ଧ୍ୟାନ ରଖିବା ଉଚିତ ନା ?' ତେବେ ଆମେ ଶୀଘ୍ର ଘରକୁ ଗଲେ ସେଥିରେ କ୍ଷତି କ'ଣ ? ବଳଦ ନ ଚାଲିଲେ ତେଲି ତା'କୁ ଫୋଡ଼ଣାରେ କେଞ୍ଚି ଦିଏ । ଏହା ବଦଳରେ ସେ ଯଦି ଆଗେଇ ଚାଲନ୍ତା ତେବେ ତେଲି ତା'କୁ କେଞ୍ଚନ୍ତା ନାହିଁ ନା ! ନଚେତ୍ ତେଲି ତା'କୁ ଫୋଡ଼ଣାରେ କେଞ୍ଚିବ ଏବଂ ତା'କୁ ଚାଲିବାକୁ ପଡ଼ିବ । ଚାଲିବାକୁ ତ ପଡ଼ିବ ନା ? ତୁମେ ଦେଖିଛ ଏଭଳି ? ଫୋଡ଼ଣା, ଯେଉଁଥିରେ ଅଗରେ କଣ୍ଟା(ଲୁହାର ଦାଆ ସଦୃଶ) ଥାଏ, ତା'କୁ କେଞ୍ଚନ୍ତି, ମୂକ ଜୀବଟି କ'ଣ କରିବ ? ସେ କାହା ନିକଟରେ ଅଭିଯୋଗ କରିବ ?

ଏହି ଲୋକମାନଙ୍କୁ ଯଦି କେହି ଆଘାତ ଦିଏ ତେବେ ସେମାନଙ୍କୁ ବଞ୍ଚାଇବା ପାଇଁ ଅନ୍ୟ ଲୋକମାନେ ବାହାରି ଆସିବେ, କିନ୍ତୁ ସେ ମୂକ ଜୀବଟି କାହା ନିକଟରେ ଅଭିଯୋଗ କରିବ ? ଏବେ ତା'କୁ ଏପରି ମାଡ଼ ଖାଇବାର ସମୟ କାହିଁକି ଆସିଲା ? କାହିଁକିନା ପୂର୍ବରୁ ବହୁତ ଅଭିଯୋଗ କରିଥିଲା । ତାହାର ଏହି ପରିଣାମ ଆସିଛି । ସେତେବେଳେ କ୍ଷମତାରେ ଆସିଥିଲା, ଅଭିଯୋଗ ପରେ ଅଭିଯୋଗ କରିଥିଲା । ଏବେ କ୍ଷମତାରେ ନାହିଁ, ସେଥିପାଇଁ ଅଭିଯୋଗ ନ କରି ରହିବାକୁ ହେବ । ଏଣୁ ଏବେ 'ପ୍ଲସ୍-ମାଇନସ୍' କରିଦିଅ । ଏହା ଅପେକ୍ଷା ଅଭିଯୋଗକାରୀ ହିଁ ହେବା ନାହିଁ, ଏଥିରେ କ'ଣ ଭୁଲ ? ଅଭିଯୋଗକାରୀ ହେବା ତେବେଯାଇ ଅପରାଧୀ ହେବାର ସମୟ ଆସିବ ନା ? ଆମକୁ ତ ଅପରାଧୀ ବି ହେବାର ନାହିଁ ଆଉ ଅଭିଯୋଗକାରୀ ବି ହେବାର ନାହିଁ । ସାମନାବାଲା ଗାଳି ଦେଇଗଲା, ତାହାକୁ ଜମା କରିଦେବ ।

ଅଭିଯୋଗକାରୀ ହେବାର ହିଁ ନାହିଁ । ତୁମକୁ କ'ଣ ଲାଗୁଛି ? ଅଭିଯୋଗକାରୀ ହେବା ଠିକ୍ ? କିନ୍ତୁ ତାହା ଅପେକ୍ଷା ପ୍ରଥମରୁ ହିଁ 'ଏଡ଼ଜଷ୍ଟ' ହୋଇଯିବା, ତେବେ କ'ଣ ଭୁଲ ?

## ଓଲଟା କହିଦେବା ପରେ

ବ୍ୟବହାରରେ 'ଏଡଜଷ୍ଟମେଣ୍ଟ' ନେବାକୁ ଏହି କାଳରେ ମୁଁ 'ଜ୍ଞାନ' ବୋଲି କହିଛି । ହଁ, ଏଡ଼ଜଷ୍ଟମେଣ୍ଟ ନେବ, ଏଡ଼ଜଷ୍ଟମେଣ୍ଟ ଭାଙ୍ଗୁଥିବ(ହୋଇପାରୁ ନଥିବ) ତଥାପି ଏଡ଼ଜଷ୍ଟ କରିନେବ । ତୁମେ ତା'କୁ ଭଲ-ମନ୍ଦ କହିଦେଲ । ଏବେ କହିବା, ତାହା ତୁମ ଅଧିନରେ ନାହିଁ । ତୁମେ ମଧ କେବେ କାହାକୁ କିଛି କହିଦିଅ ନା ନାହିଁ ? କହି ତ ଦେଲ, କିନ୍ତୁ ପରେ ତୁରନ୍ତ ଜଣା ପଡ଼ିଯାଏ ଯେ ଭୁଲ ହୋଇଗଲା । ଜଣା ନ ପଡ଼ି ରୁହେ ନାହିଁ, କିନ୍ତୁ ସେହି ସମୟରେ ଆମେ ଏଡ଼ଜଷ୍ଟ କରିବାକୁ ଯାଇ ନଥାନ୍ତି । ପରେ ତୁରନ୍ତ ତାଙ୍କ ନିକଟକୁ ଯାଇ କହିବା ଉଚିତ ଯେ, 'ଭାଇ, ମୋ ମୁହଁରୁ ସେତେବେଳେ ଭଲ-ମନ୍ଦ ବାହାରି ଯାଇଥିଲା, ମୋର ଭୁଲ ହୋଇଗଲା, ଏଥିପାଇଁ କ୍ଷମା କରିବ !' ତେବେ ଏଡ଼ଜଷ୍ଟମେଣ୍ଟ ହୋଇଗଲା । ଏଥିରେ କିଛି ଅସୁବିଧା ଅଛି ?

**ପ୍ରଶ୍ନକର୍ତ୍ତା :** ନା, କିଛି ଅସୁବିଧା ନାହିଁ ।

## ପ୍ରତ୍ୟେକ ଜାଗାରେ ଏଡ଼ଜଷ୍ଟମେଣ୍ଟ

**ପ୍ରଶ୍ନକର୍ତ୍ତା :** ଅନେକ ସମୟରେ ଏପରି ହୁଏ ଯେ ଏକ ସମୟରେ ଦୁଇଜଣଙ୍କ ସହ ଗୋଟିଏ କଥା ପାଇଁ 'ଏଡ଼ଜଷ୍ଟମେଣ୍ଟ' ନେବାକୁ ଥିବ, ତେବେ ସେହି ସମୟରେ ଦୁହିଁଙ୍କୁ କିପରି ଏଡ଼ଜଷ୍ଟ କରି ପାରିବୁ ?

**ଦାଦାଶ୍ରୀ :** ଦୁହିଙ୍କ ସହ (ଏଡ଼ଜଷ୍ଟମେଣ୍ଟ) ନେଇ ପାରିବା । ଆରେ, ସାତ ଜଣଙ୍କ ସହ ନେବାର ଥିଲେ ମଧ ନେଇ ହେବ । ଜଣେ ପଚାରେ, 'ମୋର କ'ଣ କଲୁ ?' ତେବେ କୁହ, 'ହଁ, ଭାଇ, ତୁମ କହିବା ଅନୁସାରେ କରିବି ।' ଅନ୍ୟ ଜଣଙ୍କୁ ବି ଏହିପରି କହିବ ଯେ 'ତୁମେ ଯେମିତି କହିବ ସେମିତି କରିବି ।' 'ବ୍ୟବସ୍ଥିତ'ରୁ ବାହାରେ ହେବାର ନାହିଁ । ଏଥିପାଇଁ କୌଣସି ପ୍ରକାରେ ଝଗଡ଼ା ହେବାକୁ ଦେବନାହିଁ । ମୁଖ୍ୟ ଜିନିଷ 'ଏଡ଼ଜଷ୍ଟମେଣ୍ଟ' ଅଟେ । 'ହଁ' ରୁ ମୁକ୍ତି । ଆମେ 'ହଁ' କହିଲେ, ତଥାପି

'ବ୍ୟବସ୍ଥିତ'ରୁ ବାହାରେ କିଛି ହେବ କି? କିନ୍ତୁ 'ନା' କହିଲ ତେବେ ମହା-*ଉପାଧି*(ସାଂସାରିକ ଦୁଃଖ)!

ଘରେ ସ୍ୱାମୀ-ସ୍ତ୍ରୀ ଦୁହେଁ 'ନିଶ୍ଚୟ' କରନ୍ତୁ ଯେ ମୋତେ 'ଏଡ଼ଜଷ୍ଟ' ହେବାର ଅଛି, ତେବେ ଦୁହିଁଙ୍କର ସମାଧାନ ଆସିଯିବ। ସେ ବେଶୀ ଭିଡ଼ା-ଓଟରା କରେ, ସେତେବେଳେ ଆମେ 'ଏଡ଼ଜଷ୍ଟ' ହୋଇଯିବା ତେବେ ସମାଧାନ ହୋଇଯିବ। ଜଣେ ଲୋକର ହାତ ବିନ୍ଧୁଥିଲା, କିନ୍ତୁ ସେ କାହାକୁ ଜଣାଇଲା ନାହିଁ, ଏବଂ ଅନ୍ୟ ହାତରେ ସେ ହାତକୁ ଦବାଇ 'ଏଡ଼ଜଷ୍ଟ' କଲା! ଏହିପରି 'ଏଡ଼ଜଷ୍ଟ' ହୋଇଯିବା, ତେବେ ସମାଧାନ ଆସିବ। ଯଦି 'ଏଡ଼ଜଷ୍ଟ ଏଭ୍ରିହ୍ୱେୟାର' ନ ହେବ ତେବେ ସମସ୍ତେ ପାଗଳ ହୋଇଯିବ। ସାମନାବାଲାକୁ ଚିଡ଼ାଉଥିଲେ, ସେଥିପାଇଁ ପାଗଳ ହୋଇଛନ୍ତି। କୁକୁରକୁ ଥରେ ଚିଡ଼ାଇଲ, ଦୁଇଥର, ତିନିଥର ଚିଡ଼ାଇଲ, ସେ ପର୍ଯ୍ୟନ୍ତ ସେ ଆମର ସମ୍ମାନ ରଖିବ, କିନ୍ତୁ ପୁଣି ବାରମ୍ବାର ଚିଡ଼ାଇ ଚାଲିବା ତେବେ ସେ ମଧ୍ୟ ଆମକୁ କାମୁଡ଼ିଦେବ। ସେ ବି ବୁଝିଯିବ ଯେ ଏ ସବୁଦିନ ଚିଡ଼ାଉଛି, ଏ ଅଯୋଗ୍ୟ ଅଟେ, ବେହିୟା ଅଟେ। ଏହା ବୁଝିବା ଯୋଗ୍ୟ କଥା ଅଟେ। ତିଳେମାତ୍ର ବି ଝଂଝଟ୍ କରିବାର ନାହିଁ, 'ଏଡ଼ଜଷ୍ଟ ଏଭ୍ରିହ୍ୱେୟାର'।

ଯାହାକୁ 'ଏଡ଼ଜଷ୍ଟ' ହେବାର କଳା ଆସିଗଲା, ସେ ସଂସାରରୁ 'ମୋକ୍ଷ' ଆଡ଼କୁ ବୁଲିଲା।'ଏଡ଼ଜଷ୍ଟମେଣ୍ଟ' ହେଲା, ତାହାର ନାମ ଜ୍ଞାନ। ଯିଏ 'ଏଡ଼ଜଷ୍ଟମେଣ୍ଟ' ଶିଖିଗଲା, ସେ ତରିଗଲା। ଯାହା ଭୋଗିବାର ଅଛି, ତାହା ତ ଭୋଗିବାକୁ ହିଁ ପଡ଼ିବ। କିନ୍ତୁ ଯାହାକୁ 'ଏଡ଼ଜଷ୍ଟମେଣ୍ଟ' ନେବା ଆସିଯାଏ, ତା'କୁ ଅସୁବିଧା ହେବ ନାହିଁ, ହିସାବ ପୂରା ହୋଇଯିବ। କେବେ ଯଦି ଲୁଟେରା ମିଳିଯିବେ, ସେତେବେଳେ ସେମାନଙ୍କ ସହ 'ଡିସ୍‌ଏଡ଼ଜଷ୍ଟ' ହେଲେ ସେମାନେ ମାରିବେ। ତାହା ଅପେକ୍ଷା ଆମେ ସ୍ଥିର କରିବା ଯେ ସେମାନଙ୍କ ସହ 'ଏଡ଼ଜଷ୍ଟ' ହୋଇ କାମ ନେବାର ଅଛି। ପରେ ତାଙ୍କୁ ପଚାରିବା ଯେ 'ଭାଇ, ତୁମର କଣ ଇଚ୍ଛା? ଦେଖ ଭାଇ, ଆମେ ତ ତୀର୍ଥଯାତ୍ରାରେ ବାହାରିଛୁ।' (ଏହିପରି) ସେମାନଙ୍କ ସହ 'ଏଡ଼ଜଷ୍ଟ' ହୋଇଯିବା।

ପତ୍ନୀ ରୋଷେଇ କରିଥିବ, ସେଥିରେ ଭୁଲ ବାହାର କରିବା ତେବେ ତାହା ବ୍ଲଣ୍ଡର୍ସ(ନିର୍ବୋଧତା)। ଏପରି ଭୁଲ କାଢ଼ନ୍ତି ନାହିଁ। ଯେମିତି ନିଜେ କେବେ ବି ଭୁଲ କରେ ନାହିଁ, ସେମିତି କହୁଛି। ହାଓ ଟୁ ଏଡ଼ଜଷ୍ଟ? ଏଡ଼ଜଷ୍ଟମେଣ୍ଟ ନେବା ଉଚିତ।

ଯାହା ସହିତ ସବୁଦିନ ରହିବାର ଅଛି, ତା'ସହିତ କ'ଣ ଏଡ଼ଜଷ୍ଟମେଣ୍ଟ ନେବା ଉଚିତ ନୁହେଁ ? ନିଜ ଦ୍ୱାରା କାହାକୁ ଦୁଃଖ ପହଞ୍ଚେ, ତେବେ ତାହା ଭଗବାନ ମହାବୀରଙ୍କ ଧର୍ମ କିପରି କୁହାଯିବ ? ଆଉ ଘରଲୋକଙ୍କୁ ତ, ଅବଶ୍ୟ, ଦୁଃଖ ନ ହେବା ହିଁ ଉଚିତ ।

## ଘର ଏକ ବଗିଚା

ଜଣେ ଭାଇ ମୋତେ କହିବାକୁ ଲାଗିଲା ଯେ 'ଦାଦାଜୀ, ମୋ ସ୍ତ୍ରୀ ଘରେ ଏମିତି କରୁଛି, ସେମିତି କରୁଛି ।' ମୁଁ ତା'କୁ କହିଲି, ତୁମ ପତ୍ନୀକୁ ପଚାରିଲେ ସେ କ'ଣ କହିବ ନା 'ମୋ ସ୍ୱାମୀର ବୁଦ୍ଧି ନାହିଁ ।' ଏବେ ଏଥିରେ ତୁମେ କେବଳ ନିଜର ହିଁ ନ୍ୟାୟ କାହିଁକି ଖୋଜୁଛ ? ତେବେ ସେ ଭାଇ କହିଲା ଯେ 'ମୋ ଘର ତ ବିଗିଡ଼ି ଗଲାଣି, ପିଲାମାନେ ବିଗିଡ଼ି ଗଲେଣି, ସ୍ତ୍ରୀ ବିଗିଡ଼ି ଗଲାଣି' । ମୁଁ କହିଲି, 'କିଛି ବି ବିଗିଡ଼ି ନାହିଁ ।' ତୁମକୁ ତାହା 'ଦେଖିବା' ଆସୁ ନାହିଁ । ତୁମକୁ ନିଜ ଘର 'ଦେଖିବା' ଆସିବା ଦରକାର । ପ୍ରତ୍ୟେକଙ୍କ ପ୍ରକୃତିକୁ ଚିହ୍ନି ପାରୁଥିବା ଦରକାର ।

ଘରେ ଏଡ଼ଜଷ୍ଟମେଣ୍ଟ ହୋଇପାରେ ନାହିଁ, ତାହାର କାରଣ କ'ଣ ? ପରିବାରରେ ଅଧିକ ସଦସ୍ୟ ଥିଲେ ସମସ୍ତଙ୍କ ସହିତ ତାଳମେଳ ରୁହେ ନାହିଁ । କଥାରୁ ନଥା ହୋଇଯାଏ । କାହିଁକି ? ମନୁଷ୍ୟର ଯେଉଁ ସ୍ୱଭାବ, ତାହା ଏକ ସମାନ ହୋଇନଥାଏ । ଯେମିତି ଯୁଗ, ସେମିତି ସ୍ୱଭାବ ହୋଇଯାଏ । ସତ୍ୟଯୁଗରେ ପରସ୍ପର ମେଳ ଖାଉଥିଲା । ଘରେ ଶହେ ମଣିଷ ଥିବେ, ତଥାପି ଜେଜେବାପାଙ୍କ କହିବା ଅନୁସାରେ ସମସ୍ତେ ଚାଲୁଥିଲେ ଆଉ ଏ କଳିଯୁଗରେ ତ ଜେଜେବାପା କିଛି କହିଲେ ତାଙ୍କୁ ବଡ଼-ବଡ଼ ଗାଳି ଶୁଣାନ୍ତି । ବାପ କିଛି କହିଲେ ବାପକୁ ମଧ୍ୟ ସେହିପରି ଶୁଣାଇ ଦିଅନ୍ତି ।

ଏବେ ମନୁଷ୍ୟ ତ ମନୁଷ୍ୟ ହିଁ ଅଟେ, କିନ୍ତୁ ତୁମକୁ ଚିହ୍ନିବା ଆସୁନାହିଁ । ଘରେ ପଚାଶ ମଣିଷ ଥାଆନ୍ତୁ, କିନ୍ତୁ ତୁମକୁ ଚିହ୍ନିବା ଆସିଲା ନାହିଁ, ସେଥିପାଇଁ ଝାମେଲା ହୋଇଚାଲିଥାଏ । ସେମାନଙ୍କୁ ଚିହ୍ନିବା ତ ଦରକାର ନା । ଘରେ ଜଣେ ବ୍ୟକ୍ତି ସବୁବେଳେ କିଚ୍-କିଚ୍ କରୁଥିବ, ତେବେ ତାହା ତ ତା'ର ସ୍ୱଭାବ ଅଟେ । ଏଥିପାଇଁ ତୁମକୁ ଥରୁଟେ ବୁଝିନେବା ଉଚିତ ଯେ ଇଏ ଏମିତି ଅଟେ । ତୁମେ

ପ୍ରକୃତରେ ଚିହ୍ନିପାରୁଛ ଯେ ଇଏ ଏମିତି ହିଁ ଅଟେ ? ପୁଣି ସେଥିରେ ଆଗକୁ କିଛି ଜାଞ୍ଚ କରିବାର ଆବଶ୍ୟକତା ଅଛି କି ? ତୁମେ ଚିହ୍ନିଗଲ, ପରେ କିଛି ଜାଞ୍ଚ କରିବାର ଆବଶ୍ୟକତା ରୁହେ ନାହିଁ । କିଛି ଲୋକଙ୍କୁ ରାତିରେ ଡେରିରେ ଶୋଇବାର ଅଭ୍ୟାସ ଥାଏ, ଆଉ କିଛି ଲୋକଙ୍କର ଶୀଘ୍ର ଶୋଇବାର ଅଭ୍ୟାସ ଥାଏ, ତେବେ ସେ ଦୁହିଙ୍କର ମେଳ କିପରି ହେବ ? ଆଉ ପରିବାରରେ ସବୁ ସଦସ୍ୟ ସାଥିରେ ରହୁଥିବେ ତେବେ କ'ଣ ହେବ ? ଯଦି ଘରେ ଜଣେ ବ୍ୟକ୍ତି ଏପରି କୁହେ ଯେ 'ତୁମର ବୁଦ୍ଧି କମ୍ ଅଛି', ତେବେ ତୁମକୁ ବୁଝିନେବା ଉଚିତ୍ ଯେ ତା'ର କଥାବାର୍ତ୍ତା ହିଁ ଏପରି ଅଟେ । ଏଣୁ ତୁମକୁ 'ଏଡ଼ଜଷ୍ଟ' ହୋଇଯିବା ଉଚିତ୍ । ତା'ବଦଳରେ ଯଦି ତୁମେ ପ୍ରତ୍ୟୁତ୍ତର ଦେବ ତେବେ ତୁମେ ଥକିଯିବ । କାହିଁକିନା ସେ ତ ତୁମକୁ ଧକ୍କା ଦେଲା, କିନ୍ତୁ ତୁମେ ବି ତା'କୁ ଧକ୍କା ଦେବ, ତେବେ ତୁମର ମଧ ଆଖି ନାହିଁ, ଏହା ପ୍ରମାଣିତ ହୋଇଗଲା ନା ! ମୁଁ କହିବାକୁ ଚାହୁଁଛି ଯେ ପ୍ରକୃତିର ସାଇନ୍ସ ଜାଣ । ବାକି, ଆତ୍ମା ତ ଅଲଗା ବସ୍ତୁ ଅଟେ ।

## ବିଭିନ୍ନ, ବଗିଚାର ଫୁଲର ରଙ୍ଗ-ସୁଗନ୍ଧ

ତୁମ ଘର ତ ବଗିଚା ଅଟେ । ସତ୍ୟଯୁଗ, ତ୍ରେତୟା ଆଉ ଦ୍ୱାପର ଯୁଗରେ ଘର କ୍ଷେତ ଭଳି ଥିଲା । କେଉଁ କ୍ଷେତରେ କେବଳ ଗୋଲାପ, ଆଉ କେଉଁ କ୍ଷେତରେ କେବଳ ଚମ୍ପା । ଆଜିକାଲି ଘର ବଗିଚା ପରି ହୋଇଗଲାଣି । ଏଥିପାଇଁ ଆମକୁ ଏହା ମଲ୍ଲୀ ନା ଗୋଲାପ, ଏପରି ପରଖିନେବା ଉଚିତ ନୁହେଁ ? ସତ୍ୟଯୁଗରେ କ'ଣ ଥିଲା ନା, ଗୋଟିଏ ଘରେ ଗୋଲାପ ଥିବ ତେବେ ସମସ୍ତେ ଗୋଲାପ ଏବଂ ଅନ୍ୟ ଏକ ଘରେ ଜଣେ ମଲ୍ଲୀ, ତେବେ ଘରର ସମସ୍ତେ ମଲ୍ଲୀ, ଏପରି ଥିଲା । ଗୋଟିଏ ପରିବାରରେ ସମସ୍ତେ ଗୋଲାପର ଚାରା, ଗୋଟିଏ କ୍ଷେତ ଭଳି, ସେଥିପାଇଁ ଅସୁବିଧା ହେଉ ନ ଥିଲା, ଆଉ ଆଜିକାଲି ତ ବଗିଚା ପରି ହୋଇ ଗଲାଣି । ଗୋଟିଏ ଘରେ ଜଣେ ଗୋଲାପ ପରି, ଆଉ ଜଣେ ମଲ୍ଲୀ ପରି । ସେଥିପାଇଁ ଗୋଲାପ ଚିତ୍କାର କରେ ଯେ 'ତୁ ମୋ ପରି କାହିଁକି ନୁହେଁ ? ତୋ ରଙ୍ଗ ଦେଖ, କେମିତି ଧଳା, ମୋ ରଙ୍ଗ କେତେ ସୁନ୍ଦର ଅଟେ' ! ସେତେବେଳେ ମଲ୍ଲୀ କହିବ ଯେ, 'ତୋ ଦେହରେ ତ କେବଳ କଣ୍ଟା ଅଛି ।' ଏବେ ଗୋଲାପ ହେବ ତେବେ କଣ୍ଟା ତ ରହିବ, ଆଉ ମଲ୍ଲୀ

ହେବ ତେବେ କଣ୍ଟା ନ ଥିବ । ମଲ୍ଲୀ ଫୁଲ ଧଳା ହେବ, ଆଉ ଗୋଲାପ ଫୁଲ ଗୋଲାପି ହେବ, ଲାଲ ହେବ । ଏ କଳିଯୁଗରେ ଗୋଟିଏ ଘରେ ଭିନ୍ନ-ଭିନ୍ନ ଚାରା ଥାଆନ୍ତି । ଅର୍ଥାତ ଘର ବଗିଚା ପରି ହୋଇଗଲାଣି । କିନ୍ତୁ ଏ ତ ଦେଖିବା ହିଁ ଆସୁ ନାହିଁ, ତା'ର କ'ଣ ହେବ ? ତା'କୁ ଦୁଃଖ ହିଁ ହେବ ନା ! ଜଗତର ଏହା ଦେଖିବାର ଦୃଷ୍ଟି ନାହିଁ । ବାକି, କେହି ଖରାପ ନଥାନ୍ତି । ଏହି ମତଭେଦ ତ ନିଜ ଅହଂକାର କାରଣରୁ ଅଛି । ଯେଉଁମାନଙ୍କୁ ଦେଖିବା ଆସେ ନାହିଁ, ସେମାନଙ୍କୁ ଅହଂକାର ଅଛି । ମୋର ଅହଂକାର ନାହିଁ, ସେଥିପାଇଁ ମୋତେ ସାରା ସଂସାରରେ କାହାରି ସହିତ ମତଭେଦ ହିଁ ହୁଏ ନାହିଁ । ମୋତେ ଦେଖିବା ଆସେ ଯେ, ଏହା 'ଗୋଲାପ' ଅଟେ, ଏହା 'ମଲ୍ଲୀ' ଅଟେ, ଏହା 'ଦୁଦୁରା' ଅଟେ, ଏହା ପିତା 'କୁନ୍ଦୁରୀ' ଫୁଲ ଅଟେ । ଏହିପରି ସବୁ ମୁଁ ଚିହ୍ନିଛି । ଅର୍ଥାତ ବଗିଚା ପରି ହୋଇଗଲାଣି । ଏହା ତ ପ୍ରଶଂସା କରିବା ଯୋଗ୍ୟ ହେଲା ନା ? ତୁମକୁ କ'ଣ ଲାଗୁଛି ?

**ପ୍ରଶ୍ନକର୍ତ୍ତା :** ଠିକ୍ କଥା ।

**ଦାଦାଶ୍ରୀ :** ଏପରି ଅଟେ ଯେ, ପ୍ରକୃତିରେ ପରିବର୍ତ୍ତନ ହୁଏ ନାହିଁ । ତାହା ତ ସେହି କୁ ସେହି ପୁରୁଣା ମାଲ୍, ସେଥିରେ ଫରକ ଆସେ ନାହିଁ । ମୁଁ ପ୍ରତ୍ୟେକ ପ୍ରକୃତିକୁ ଜାଣି ସାରିଛି, ସେଥିପାଇଁ ତୁରନ୍ତ ଚିହ୍ନି ପାରେ । ସେଥିପାଇଁ ମୁଁ ପ୍ରତ୍ୟେକଙ୍କ ସହିତ ସେମାନଙ୍କ ପ୍ରକୃତି ଅନୁସାରେ ରୁହେ । ସୂର୍ଯ୍ୟଙ୍କ ସହିତ ଆମେ ଦ୍ୱିପ୍ରହର ୧୨ଟାରେ ଦୋସ୍ତି କରିବା, ତେବେ କ'ଣ ହେବ ? ସେହିପରି ଯଦି ଆମେ ବୁଝିନେବା ଯେ ଏହା ଗ୍ରୀଷ୍ମର ସୂର୍ଯ୍ୟ ଅଟେ, ଏହା ଜାଡ଼ର ସୂର୍ଯ୍ୟ ଅଟେ, ଏପରି ସବୁ ବୁଝିନେବା, ତେବେ ପୁଣି ଅସୁବିଧା ହେବ ?

ମୁଁ ପ୍ରକୃତିକୁ ଚିହ୍ନିଛି, ସେଥିପାଇଁ ତୁମେ ଧକ୍କା ଲାଗିବା ପାଇଁ ଚାହିଁଲେ ବି ମୁଁ ଧକ୍କା ହେବାକୁ ଦେବିନାହିଁ, ମୁଁ ଖସି ଯିବି । ନଚେତ ଦୁହିଙ୍କ ଏକ୍ସିଡେଣ୍ଟ ହୋଇଯିବ ଏବଂ ଦୁହିଁଙ୍କର ସ୍ପେୟର୍ ପାର୍ଟ୍ସ୍(ଅଙ୍ଗ ପ୍ରତ୍ୟଙ୍ଗ) ଭାଙ୍ଗିଯିବ । ଯଦି କାହାର ବମ୍ପର ଭାଙ୍ଗିଯାଏ, ତେବେ ଭିତରେ ବସିଥିବା ଲୋକର ଅବସ୍ଥା କ'ଣ ହେବ ? ବସିଲାବାଲାର ତ ଦୁର୍ଦ୍ଦଶା ହୋଇଯିବ ନା ! ଏଣୁ ପ୍ରକୃତିକୁ ଚିହ୍ନ । ଘରେ ସମସ୍ତଙ୍କ ପ୍ରକୃତିକୁ ଚିହ୍ନିନେବାର ଅଛି ।

ଏହି କଳିଯୁଗରେ ମନୁଷ୍ୟର ପ୍ରକୃତି କ୍ଷେତ ପରି ନୁହେଁ, ବଗିଚା ପରି ଅଟେ । ଗୋଟିଏ ଚମ୍ପା, ଅନ୍ୟଟି ଗୋଲାପ, ମଲ୍ଲୀ, ଚମେଲି ଇତ୍ୟାଦି । ଏଥିପାଇଁ ସବୁ ଫୁଲ ଲଢ଼ନ୍ତି । ଜଣେ କହିବ ଯେ ମୋର ଏମିତି, ତେବେ ଅନ୍ୟ ଜଣେ କହିବ ଯେ ମୋର ଏମିତି । ସେତେବେଳେ ଜଣେ କହିବ ଯେ ତୋ ଦେହରେ କଣ୍ଟା ଅଛି, ଚାଲି ଯା, ତୋ ସାଙ୍ଗରେ କିଏ ରହିବ ? ଏହିପରି ଝଗଡ଼ା ଚାଲିଥାଏ ।

## କାଉଣ୍ଟର ପୁଲୀର କରାମତି

ଆମକୁ ପ୍ରଥମେ ନିଜର ମତ ରଖିବା ଉଚିତ୍ ନୁହେଁ । ସାମନାବାଲାକୁ ପଚାରିବ ଯେ ଏ ବାବଦରେ ତୁମେ କ'ଣ କହିବାକୁ ଚାହୁଁଛ ? ସାମନାବାଲା ନିଜ କଥାରେ ଅଟଳ ରହିଲେ, ମୁଁ ମୋ କଥା ଛାଡ଼ିଦିଏ । ଆମକୁ ତ ଏତିକି ଦେଖିବାର ଅଛି ଯେ କେମିତି ବି, ସାମନାବାଲାକୁ ଦୁଃଖ ନ ହେଉ । ନିଜର ଅଭିପ୍ରାୟ ସାମନାବାଲା ଉପରେ ଲଦିବା ଉଚିତ ନୁହେଁ । ସାମନାବାଲାର ଅଭିପ୍ରାୟକୁ ତୁମେ ସ୍ୱୀକାରିବା ଉଚିତ । ମୁଁ ତ ସମସ୍ତଙ୍କ ଅଭିପ୍ରାୟକୁ ସ୍ୱୀକାରି 'ଜ୍ଞାନୀ' ହୋଇଛି । ମୁଁ ନିଜ ଅଭିପ୍ରାୟ କାହା ଉପରେ ଲଦିବାକୁ ଯିବି ତେବେ ମୁଁ ହିଁ ଦୁର୍ବଳ ପଡ଼ିଯିବି । ନିଜ ଅଭିପ୍ରାୟ ଦ୍ୱାରା କାହାରିକୁ ଦୁଃଖ ନ ହେବା ଉଚିତ ।

ତୁମ 'ରିଭୋଲ୍ୟୁସନ୍'(ଘୂର୍ଣ୍ଣନ) ୧୮୦୦ ହୋଇଥିବ ଏବଂ ସାମନାବାଲାର ୬୦୦ ହୋଇଥିବ ଆଉ ତୁମେ ନିଜ ଅଭିପ୍ରାୟ ତା'ଉପରେ ଲଦିଦେବ, ତେବେ ତା'ର 'ଇଞ୍ଜିନ୍' ଭାଙ୍ଗିଯିବ । ତା'ର ସବୁ 'ଗିଅର' ବଦଳାଇବାକୁ ପଡ଼ିବ ।

**ପ୍ରଶ୍ନକର୍ତ୍ତା :** 'ରିଭୋଲ୍ୟୁସନ୍' ମାନେ କ'ଣ ?

**ଦାଦାଶ୍ରୀ :** ଏ ଯେଉଁ ବିଚାର କରିବାର ସ୍ପିଡ଼୍(ବେଗ), ତାହା ସମସ୍ତଙ୍କର ଅଲଗା-ଅଲଗା ହୋଇଥାଏ । କିଛି ଘଟି ଯାଇଥିଲେ ତ ମନ ଗୋଟିଏ ମିନିଟ୍‌ରେ କେତେ କ'ଣ ଦେଖାଇ ଦିଏ, ତାହାର ସମସ୍ତ ପର୍ଯ୍ୟାୟ 'ଏଟ୍ ଏ ଟାଇମ୍'(ଏକ ସମୟରେ) ଦେଖାଇଦିଏ । ଏହି ବଡ଼ ବଡ଼ ପ୍ରେସିଡେଣ୍ଟମାନଙ୍କର ଏକ ମିନିଟ୍‌ରେ ବାରଶହ 'ରିଭୋଲ୍ୟୁସନ୍' ଘୂରେ ଆଉ ମୋର ପାଞ୍ଚହଜାର ଏବଂ ଭଗବାନ ମହାବୀରଙ୍କର ଲକ୍ଷେ 'ରିଭୋଲ୍ୟୁସନ୍' ଘୂରୁଥିଲା !

ଏହି ମତଭେଦ ହେବାର କାରଣ କ'ଣ ? ତୁମ ପତ୍ନୀର ଶହେ 'ରିଭୋଲ୍ୟୁସନ୍' ହୋଇଥିବ ଆଉ ତୁମର ପାଞ୍ଚଶହ 'ରିଭୋଲ୍ୟୁସନ୍' ହୋଇଥିବ ଏବଂ ତୁମକୁ ମଝିରେ 'କାଉଣ୍ଟର ପୁଲୀ' ଲଗାଇବା ଆସେ ନାହିଁ, ସେଥିପାଇଁ ଚିଙ୍ଗାରି(ନିଆଁ) ବାହାରେ ଏବଂ ଝଗଡ଼ା ହୋଇଥାଏ । ଆରେ ! କେବେ କେବେ ତ ଇଞ୍ଜିନ୍ ବି ଭାଙ୍ଗିଯାଏ । 'ରିଭୋଲ୍ୟୁସନ୍' ବୁଝିପାରିଲ ତୁମେ ? ତୁମେ ଏହି ମଜୁରିଆ ସହ କଥା ହୁଅ ତେବେ ତୁମ କଥା ତା' ପର୍ଯ୍ୟନ୍ତ ପହଞ୍ଚେ ନାହିଁ । ତା' ରିଭୋଲ୍ୟୁସନ ପଚାଶ ଏବଂ ତୁମର ପାଞ୍ଚଶହ । କାହାର ହଜାରେ ହୋଇଥାଏ, କାହାର ବାରଶହ, ଯାହାର ଯେପରି ଡେଭଲପ୍‌ମେଣ୍ଟ ହୋଇଥିବ, ସେହି ଅନୁସାରେ 'ରିଭୋଲ୍ୟୁସନ୍' ହୋଇଥାଏ । ମଝିରେ 'କାଉଣ୍ଟର୍ ପୁଲୀ' ଲଗାଇବ, ତେବେ ଯାଇ ତୁମ କଥା ତା' ପର୍ଯ୍ୟନ୍ତ ପହଞ୍ଚିବ । 'କାଉଣ୍ଟର୍ ପୁଲୀ' ଅର୍ଥାତ ତୁମକୁ ମଝିରେ ବେଲ୍ଟ ଲଗାଇ ତୁମ ରିଭୋଲ୍ୟୁସନ କମ କରିବାକୁ ପଡ଼ିବ । ମୁଁ ପ୍ରତିଟି ମଣିଷ ସହ 'କାଉଣ୍ଟର୍ ପୁଲୀ' ଲଗାଇ ଦିଏ । କେବଳ ଅହଂକାର ବାହାର କରିଦେଲେ ଯେ କାମ ହେବ, ଏପରି ନୁହେଁ । 'କାଉଣ୍ଟର୍ ପୁଲୀ' ମଧ୍ୟ ପତ୍ୟେକଙ୍କ ସହିତ ଲଗାଇବାକୁ ପଡ଼େ । ସେଥିପାଇଁ ମୋର କାହାରି ସହ ମତଭେଦ ହୁଏ ନାହିଁ ନା ! ମୁଁ ଜାଣେ ଯେ ଏହି ଭାଇଙ୍କର ଏତିକି ହିଁ 'ରିଭୋଲ୍ୟୁସନ୍' ଅଟେ । ସେଥିପାଇଁ ମୁଁ ସେହି ଅନୁସାରେ 'କାଉଣ୍ଟର୍ ପୁଲୀ' ଲଗାଇ ଦିଏ । ମୋର ତ ଛୋଟ ପିଲାଙ୍କ ସହିତ ବି ଖୁବ୍ ଜମିଥାଏ । କାରଣ ମୁଁ ତା' ସହିତ ଚାଳିଶ ରିଭୋଲ୍ୟୁସନ୍ ଲଗାଇ କଥା ହୁଏ । ଏହାଦ୍ୱାରା ମୋ କଥା ତା' ପାଖରେ ପହଞ୍ଚେ, ନଚେତ୍ ସେ 'ମେଶିନ୍' ଭାଙ୍ଗିଯିବ ।

**ପ୍ରଶ୍ନକର୍ତ୍ତା :** କେହି ବି ସାମନାବାଲାର ଲେବଲ୍ କୁ ଆସିବ, ତେବେ ଯାଇ କଥାବାର୍ତ୍ତା ସମ୍ଭବ ?

**ଦାଦାଶ୍ରୀ :** ହଁ, ତା' ରିଭୋଲ୍ୟୁସନ୍‌କୁ ଆସିବ ତେବେ ଯାଇ କଥାବାର୍ତ୍ତା ସମ୍ଭବ । ତୁମ ସହ କଥା ବାର୍ତ୍ତା ହେବା ବେଳେ ମୋ ରିଭୋଲ୍ୟୁସନ୍ କେଉଁଠୁ କେଉଁ ପର୍ଯ୍ୟନ୍ତ ବୁଲି ଆସେ ! ଦୁନିଆ ସାରା ବୁଲି ଆସେ ! ତୁମକୁ 'କାଉଣ୍ଟର୍ ପୁଲୀ' ଲଗାଇବା ଆସେନାହିଁ, ସେଥିରେ କମ୍ 'ରିଭୋଲ୍ୟୁସନ୍'ବାଲା ଇଞ୍ଜିନ୍‌ର କ'ଣ ଦୋଷ ? ତାହା ତ ତୁମର ଦୋଷ ଯେ ତୁମକୁ 'କାଉଣ୍ଟେର୍ ପୁଲୀ' ଲଗାଇବା ଆସିଲା ନାହିଁ !

## ଫ୍ୟୁଜ୍ ଲଗାଇବା ଶିଖ

କେବଳ ଏତିକି ଜାଣିନିଅ ଯେ ଏ 'ମେଶିନ'ଟି କିପରି ! ତା'ର 'ଫ୍ୟୁଜ୍' ଉଡ଼ିଗଲେ କିପରି ଫ୍ୟୁଜ୍ ଲଗାଇବାକୁ ହେବ । ସାମନାବାଲାର ପ୍ରକୃତି ସହ 'ଏଡ଼ଜଷ୍ଟ' ହେବା ଆସିବା ଉଚିତ । ମୋର ତ, ଯଦି ସାମନାବାଲାର 'ଫ୍ୟୁଜ୍' ଉଡ଼ିଯାଏ, ତେବେ ମଧ୍ୟ 'ଏଡ଼ଜଷ୍ଟମେଣ୍ଟ' ହୋଇଥାଏ । କିନ୍ତୁ ସାମନାବାଲାର 'ଏଡ଼ଜଷ୍ଟମେଣ୍ଟ' ଭାଙ୍ଗିଯାଏ ତେବେ କ'ଣ ହେବ ? 'ଫ୍ୟୁଜ୍' ଉଡ଼ିଗଲା, ପୁଣି ତ ସେ କାନ୍ଥରେ ଧକ୍କା ହେବ, କବାଟରେ ଧକ୍କା ହେବ, କିନ୍ତୁ ତାର ଛିଡ଼ି ନାହିଁ, କନେକ୍ସନ୍ କଟି ନାହିଁ । ଏଣୁ ଯଦି କେହି ଫ୍ୟୁଜ୍ ଲଗାଇ ଦିଏ ତେବେ ପୁଣି ସବୁ ଠିକ୍ ହୋଇଯିବ, ନଚେତ୍ ସେପର୍ଯ୍ୟନ୍ତ ସେ ଘାଣ୍ଟି ହେଉଥିବ ।

## ଆୟୁଷ ସ୍ୱଳ୍ପ ଆଉ ହଙ୍ଗାମା ଅଧିକ

ସବୁଠୁ ବଡ଼ ଦୁଃଖ କ'ଣ ? 'ଡିସ୍-ଏଡ଼ଜଷ୍ଟମେଣ୍ଟ' । ସେଠି 'ଏଡ଼ଜଷ୍ଟ ଏଭ୍ରିହ୍ୱେୟାର' କରିନେଲେ କ'ଣ ଅସୁବିଧା ?

**ପ୍ରଶ୍ନକର୍ତ୍ତା :** ସେଥିରେ ତ ପୁରୁଷାର୍ଥ ଦରକାର ।

**ଦାଦାଶ୍ରୀ :** କିଛି ପୁରୁଷାର୍ଥ ଦରକାର ନାହିଁ । ମୋ ଆଜ୍ଞାର ପାଳନ କରିବ ଯେ ଦାଦାଜୀ କହିଛନ୍ତି, 'ଏଡ଼ଜଷ୍ଟ ଏଭ୍ରିହ୍ୱେୟାର', ତେବେ 'ଏଡ଼ଜଷ୍ଟ' ହୋଇଚାଲିବ । ସ୍ତ୍ରୀ ଯଦି କୁହେ ଯେ, 'ତୁମେ ଚୋର' । ତେବେ କହିବ 'ୟୁ ଆର୍ କରେକ୍ଟ ।' ସ୍ତ୍ରୀ ଦେଢ଼ଶହ ଟଙ୍କାର ଶାଢ଼ୀ ଆଣିବାକୁ କୁହେ, ତେବେ ତୁମେ ପଚିଶ ଟଙ୍କା ଅଧିକ ଦେବ ତେବେ ପୁଣି ଛଅମାସ ଯାଏଁ ତ ଚାଲିବ !

ବ୍ରହ୍ମାଜୀଙ୍କ ଗୋଟିଏ ଦିନ, ସେତିକି ଆମର ସାରା ଜୀବନ ! ବ୍ରହ୍ମାଜୀଙ୍କ ଗୋଟିଏ ଦିନ ସମାନ ଜୀବନ ଆଉ ଏ କି ହଙ୍ଗାମା ? ଯଦି ବ୍ରହ୍ମାଜୀଙ୍କ ଶହେ ବର୍ଷ ବଞ୍ଚିବାକୁ ଥାଆନ୍ତା, ତେବେ ବୁଝନ୍ତେ ଯେ, 'ଠିକ୍ ଅଛି । ଏଡ଼ଜଷ୍ଟ କାହିଁକି ହେବା ?' 'ଦାବି କର' କହିବା । କିନ୍ତୁ ଏହା ତ ଶୀଘ୍ର ଖତମ କରିବାର ଅଛି, ଏହାର କ'ଣ କରିବା ଉଚିତ ? 'ଏଡ଼ଜଷ୍ଟ' ହୋଇଯିବା ନା ପୁଣି 'ଦାବି ସାବ୍ୟସ୍ତ କର' କହିବା ? କିନ୍ତୁ ଏହା ତ ଗୋଟିଏ ଦିନ, ଏହା ତ ଶୀଘ୍ର ଖତମ କରିବାର ଅଛି । ଯେଉଁ କାର୍ଯ୍ୟ ଶୀଘ୍ର ଖତମ କରିବାର ଥିବ, ତାହାକୁ କ'ଣ କରିବାକୁ ପଡ଼ିବ ? 'ଏଡ଼ଜଷ୍ଟ' ହୋଇ

ଛୋଟ କରିଦେବା ଉଚିତ, ନଚେତ୍ ବଢ଼ିଚାଲିବ ନା ନାହିଁ ? ସ୍ତ୍ରୀ ସହ ଲଢ଼ିବା ପରେ ରାତିରେ ନିଦ ଆସିବ କି ? ଆଉ ସକାଳେ ଭଲ ଜଳଖିଆ ମଧ୍ୟ ମିଳିବ ନାହିଁ ।

## ଆପଣାଅ, ଜ୍ଞାନୀଙ୍କ ଜ୍ଞାନକଳା !

କୌଣସି ଦିନ ଯଦି ସ୍ତ୍ରୀ କୁହେ 'ମୋତେ ସେ ଶାଢ଼ୀଟା ଆଣି ଦେବନି ? ମୋ ପାଇଁ ସେ ଶାଢ଼ୀଟା ଆଣିଦେବାକୁ ପଡ଼ିବ ।' ସେତେବେଳେ ସ୍ୱାମୀ ପଚାରିବ, 'ତୁ କେତେ ଟଙ୍କାର ଶାଢ଼ୀ ଦେଖିଥିଲୁ ?' ସ୍ତ୍ରୀ କହିବ, 'ବାଇଶିଶହ ଟଙ୍କାର, ବେଶୀ ନୁହେଁ ।' ସେତେବେଳେ ସେ କହିବ, 'ତୁମେ ବାଇଶିଶହ କହୁଛ କିନ୍ତୁ ମୁଁ ଏବେ ଟଙ୍କା ଆଣିବି କିପରି ? ଏବେ ଟଙ୍କାର ଯୋଗାଡ଼ ନାହିଁ, ଦୁଇଶହ-ତିନିଶହ ଟଙ୍କାର ହୋଇଥିଲେ ଆଣି ଦେଇଥାନ୍ତି, କିନ୍ତୁ ତୁମେ ବାଇଶିଶହ କହୁଛ ।' ସେ ରୁଷିକରି ବସି ରହିଲା, ଏବେ କି ଦଶା ହେବ ପୁଣି ! ମନରେ ଏମିତି ବି ହୁଏ କି ଆରେ, ଏହା ଅପେକ୍ଷା ତ ବାହା ନ ହୋଇଥିଲେ ଭଲ ହୋଇଥାନ୍ତା । ବାହାହେବା ପରେ ପଶ୍ଚାତାପ କରେ, ତାହା କେଉଁ କାମର ? ଅର୍ଥାତ୍ ଏମିତି ଦୁଃଖ ଅଛି ।

**ପ୍ରଶ୍ନକର୍ତ୍ତା :** ଆପଣ ଏପରି କହିବାକୁ ଚାହୁଁଛନ୍ତି ଯେ ସ୍ତ୍ରୀକୁ ବାଇଶିଶହ ଟଙ୍କାର ଶାଢ଼ୀ ଆଣିଦେବା ଉଚିତ ?

**ଦାଦାଶ୍ରୀ :** ଆଣିଦେବା ବା ନ ଆଣିଦେବା, ତାହା ତୁମ ଉପରେ ନିର୍ଭର କରେ । ରୁଷିକରି ସବୁଦିନ ରାତିରେ 'ରୋଷେଇ କରିବି ନାହିଁ' କହିବ, ସେତେବେଳେ ତୁମେ କ'ଣ କରିବ ? ରୋଷେଇଆ କେଉଁଠୁ ଆଣିବ ? ଏଥିପାଇଁ ପୁଣି କରଜ କରି ମଧ୍ୟ ଶାଢ଼ୀ ଆଣିଦେବାକୁ ପଡ଼ିବ ନା ?

ତୁମେ କିଛି ଏପରି କରିଦିଅ ଯେ ସେ ନିଜେ ହିଁ ଶାଢ଼ୀ ଆଣିବ ନାହିଁ । ଯଦି ତୁମକୁ ମାସରେ ଆଠଶହ ଟଙ୍କା ମିଳୁଛି, ତେବେ ତୁମେ ଶହେ ଟଙ୍କା ନିଜର ପକେଟ୍ ଖର୍ଚ୍ଚ ପାଇଁ ରଖି ବାକି ସାତଶହ ଟଙ୍କା ତାଙ୍କୁ ଦେଇ ଦେବ । କ'ଣ ପୁଣି ସେ ଆମକୁ କହିବ ଯେ ଶାଢ଼ୀ ଆଣିଦିଅ ? ଆଉ କେବେ ଓଲଟା ତୁମେ ଥଟ୍ଟାରେ କୁହ ଯେ 'ସେ ଶାଢ଼ୀଟା ବହୁତ ଭଲ ଥିଲା, କାହିଁକି ଆଣୁନାହଁ ?' ତାହାର ଯୋଗାଡ଼ ତା'କୁ ନିଜେ ହିଁ କରିବାକୁ ହେବ । ଯଦି ଯୋଗାଡ଼ ଆମକୁ କରିବାକୁ ଥାଆନ୍ତା, ତେବେ ସେ ଆମ ଉପରେ ଜୋର୍ ଚଲାଇବ । ଏହି ସମସ୍ତ କଳା ମୁଁ 'ଜ୍ଞାନ' ହେବା ପୂର୍ବରୁ ଶିଖି

ଯାଇଥିଲି । ପରେ 'ଜ୍ଞାନୀ' ହେଲି । ସମସ୍ତ କଳା ମୋ ପାଖକୁ ଆସିଗଲା, ତେବେଯାଇ ମୋତେ 'ଜ୍ଞାନ' ହେଲା । ଏବେ କୁହ, ଏ କଳା ନାହିଁ, ସେଥିପାଇଁ ଏ ଦୁଃଖ ଅଛି ନା! ତୁମକୁ କ'ଣ ଲାଗୁଛି ?

**ପ୍ରଶ୍ନକର୍ତ୍ତା :** ହଁ, ଠିକ୍ କଥା ।

**ଦାଦାଶ୍ରୀ :** ଏହା ତୁମେ ବୁଝିପାରିଲ ? ଏଥିରେ ଆମର ହିଁ ଭୁଲ ନା! କଳା ନାହିଁ, ସେଥିପାଇଁ ନା ? କଳା ଶିଖିବାର ଆବଶ୍ୟକତା ଅଛି । ତୁମେ କିଛି କହିଲ ନାହିଁ ଯେ ?!

## କ୍ଳେଶର ମୂଳ କାରଣ : ଅଜ୍ଞାନତା

**ପ୍ରଶ୍ନକର୍ତ୍ତା :** କିନ୍ତୁ କ୍ଳେଶ ହେବାର କାରଣ କ'ଣ ? ସ୍ୱଭାବ ମିଶେ ନାହିଁ, ସେଥିପାଇଁ ?

**ଦାଦାଶ୍ରୀ :** ଅଜ୍ଞାନତା ପାଇଁ । ସଂସାରର ଅର୍ଥ ହିଁ ଏହା ଯେ କାହାରି ସ୍ୱଭାବ କାହାରି ସହିତ ମିଶେ ନାହିଁ । ଏହି ଜ୍ଞାନ ମିଳିବା ପରେ, ତା'ପାଇଁ ଗୋଟିଏ ହିଁ ରାସ୍ତା, 'ଏଡ଼ଜଷ୍ଟ ଏଭ୍ରିହ୍ୱେୟାର'! କେହି ତୁମକୁ ମାରେ ତେବେ ମଧ୍ୟ ତୁମେ ତା' ସହ 'ଏଡ଼ଜଷ୍ଟ' ହୋଇଯାଅ ।

ମୁଁ ଏହି ସରଳ ଏବଂ ସିଧା ରାସ୍ତା ବତାଇ ଦିଏ । ଆଉ ଏହି ଘର୍ଷଣ କ'ଣ ସବୁଦିନ ହୁଏ ? ତାହା ତ ଯେତେବେଳେ ଆମ କର୍ମର ଉଦୟ ହୁଏ, ସେତେବେଳେ ହୋଇଥାଏ, ସେହି ସମୟରେ ଆମକୁ 'ଏଡ଼ଜଷ୍ଟ' ହେବାର ଅଛି । ଘରେ ପତ୍ନୀ ସହିତ ଯଦି ଝଗଡ଼ା ହୋଇଥିବ ତେବେ ତା'ପରେ ତା'କୁ ହୋଟେଲ୍‌କୁ ନେଇ, ଖୁଆଇ ପିଆଇ ଖୁସି କରିଦେବ । ଏବେ ଟଂଟ୍ ନ ରହିବା ଉଚିତ ।

ସଂସାରର କୌଣସି ଜିନିଷ ଆମକୁ 'ଫିଟ୍'(ଏଡ଼ଜଷ୍ଟ) ହେବ ନାହିଁ, ଆମେ ତାହା ସହିତ 'ଫିଟ୍' ହୋଇଯିବା ତେବେ ଏହି ଦୁନିଆ ସୁନ୍ଦର ଅଟେ, ଆଉ ତାହାକୁ ଫିଟ୍ କରିବାକୁ ଯିବା ତେବେ ଦୁନିଆ ତେଢ଼ା । ଏଣୁ 'ଏଡ଼ଜଷ୍ଟ ଏଭ୍ରିହ୍ୱେୟାର' । ଆମେ ସେଥିରେ ଫିଟ୍ ହୋଇଗଲେ, ତେବେ କୌଣସି ଅସୁବିଧା ନାହିଁ ।

## ଦାଦାଜୀ, ପୂର୍ଣ୍ଣତଃ ଏଡ଼ଜଷ୍ଟେବଲ୍

ଥରେ ତରକାରୀ ଭଲ ହୋଇଥିଲା କିନ୍ତୁ ଲୁଣ ଟିକିଏ ଅଧିକ ଥିଲା । ଏଥିପାଇଁ ପୁଣି ମୋତେ ଲାଗିଲା ଯେ ଏଥିରେ ଲୁଣ ଟିକିଏ ଅଧିକ ହୋଇଛି, କିନ୍ତୁ ଅଳ୍ପ ଖାଇବାକୁ ତ ପଡ଼ିବ ନା ! ସେଥିପାଇଁ ପରେ ଯେତେବେଳେ ହୀରାବା(ଦାଦାଜୀଙ୍କ ପତ୍ନୀ) ଭିତରକୁ ଗଲେ, ସେତେବେଳେ ମୁଁ ଅଳ୍ପ ପାଣି ମିଶାଇ ଦେଲି । ସେ ଏହା ଦେଖିନେଲେ । ସେ କହିଲେ 'ଏ କ'ଣ କଲ ?' ମୁଁ କହିଲି, 'ତୁମେ ଚୁଲି ଉପରେ ରଖି ପାଣି ଢାଳ, ମୁଁ ଏଠି ତଳେ ଢାଳୁଛି' । ତେବେ କହିଲେ, 'କିନ୍ତୁ ମୁଁ ତ ପାଣି ଢାଳି ତାହାକୁ ଫୁଟାଇ ଦିଏ' । ମୁଁ କହିଲି 'ମୋ ପାଇଁ ଉଭୟ ସମାନ ।' ମୋର ତ କାମରେ ମତଲବ ନା !

ତୁମେ ମୋତେ ଏଗାରଟା ବେଳେ କୁହ ଯେ, 'ତୁମକୁ ଭୋଜନ କରିନେବାକୁ ହେବ ।' ମୁଁ କୁହେ କି 'ଟିକେ ବିଳମ୍ବରେ ଖାଇଲେ ଚଳିବ ନାହିଁ ?' ସେତେବେଳେ ତୁମେ କୁହ ଯେ 'ନା, ଭୋଜନ କରିନିଅ, ତ କାମ ସରିଯିବ' । ତେବେ ମୁଁ ଅବିଳମ୍ବେ ଭୋଜନ କରିବା ପାଇଁ ବସିଯିବି । ମୁଁ ତୁମ ସହ 'ଏଡ଼ଜଷ୍ଟ' ହୋଇଯିବି ।

ଯାହାବି ଥାଳିରେ ଆସେ ତାହା ଖାଇନେବ । ଯାହା ସାମ୍ନାରେ ଆସିଲା, ତାହା ସଂଯୋଗ ଅଟେ ଏବଂ ଭଗବାନ କହିଛନ୍ତି ଯେ ସଂଯୋଗକୁ ଧକ୍କା ମାରିବୁ ତେବେ ସେହି ଧକ୍‌କା ତୋତେ ଲାଗିବ । ସେଥିପାଇଁ ମୋ ଥାଳିରେ ମୋତେ ନ ରୁଚୁଥିବା ଜିନିଷ ରଖିଥିଲେ ମଧ୍ୟ, ତଥାପି ସେଥିରୁ ଦୁଇଟା ଖାଇନିଏ । ନଖାଇଲେ, ଦୁହିଁଙ୍କ ସହିତ ଝଗଡ଼ା ହେବ । ପ୍ରଥମରେ, ଯିଏ ରୋଷେଇ କରିଛି ତା' ସହ ଝଂଝଟ ହେବ, ତିରସ୍କାର ହେବ ଏବଂ ଦ୍ୱିତୀୟରେ, ଖାଇବା ଜିନିଷ ସହ । ଖାଦ୍ୟ କହିବ ଯେ, 'ମୁଁ କ'ଣ ଦୋଷ କରିଛି ? ମୁଁ ତୋ ନିକଟକୁ ଆସିଛି, ତୁ ମୋର ଅପମାନ କାହିଁକି କରୁଛୁ ? ତୋତେ ଯେତିକି ଠିକ୍ ଲାଗୁଛି ସେତିକି ନେ, କିନ୍ତୁ ମୋର ଅପମାନ କର ନା ।' ଏବେ ତା'କୁ ଆମେ ମାନ ଦେବା ଉଚିତ ନୁହେଁ ? ମୋତେ ତ କେହି ରୁଚୁନଥିବ, ଏପରି ଜିନିଷ ଦିଏ ତେବେ ମଧ୍ୟ ମୁଁ ତା'କୁ ମାନ ଦିଏ । କାହିଁକିନା ପ୍ରଥମତଃ, ଏମିତିରେ କିଛି ମିଳେ ନାହିଁ, ଆଉ ଯଦି ମିଳେ ତେବେ ତା'କୁ ମାନ ଦେବାକୁ ପଡ଼େ । କୌଣସି ଜିନିଷ ତୁମକୁ ଖାଇବାକୁ ଦିଆଗଲା ଆଉ ତୁମେ ସେଥିରେ

ଦୋଷ ବାହାର କଲ ତେବେ ଏଥିରେ ସୁଖ କମିବ ନା ବଢ଼ିବ ?

ଯାହାଦ୍ୱାରା ସୁଖ କମୁଥିବ ସେଭଳି ବ୍ୟାପାର କରିବା ଉଚିତ୍ ନୁହେଁ ନା ! ମୁଁ ତ କେତେ ଥର ମୋ ପସନ୍ଦର ତରକାରି ହୋଇ ନଥିବ, ତଥାପି ଖାଇନିଏ ଏବଂ ଉପରୁ ତାରିଫ କରେ ଯେ ଆଜି ତରକାରି ବହୁତ ବଢ଼ିଆ ହୋଇଛି ।

ଆରେ, କେତେ ଥର ତ ଚାହାରେ ଯଦି ଚିନି ନଥିବ, ତଥାପି ମୁଁ କିଛି କୁହେ ନାହିଁ । ତେବେ ଲୋକେ କୁହନ୍ତି ଯେ, 'ଏପରି ଯଦି କରିବୁ, ତେବେ ଘରେ ସବୁକିଛି ବିଗିଡ଼ି ଯିବ ।' ମୁଁ କହିଲି, 'ତୁମେ କାଲି ଦେଖିବ ନା, କ'ଣ ହେଉଛି ?' ତେବେ ପୁଣି ପରଦିନ ଶୁଣିବାକୁ ମିଳେ ଯେ, 'କାଲି ଚାହାରେ ଚିନି ପଡ଼ି ନଥିଲା ତଥାପି ତୁମେ ମୋତେ କିଛି କହିଲ ନାହିଁ ?' ମୁଁ କହିଲି, 'ମୋତେ କହିବାର କ'ଣ ଆବଶ୍ୟକତା ଥିଲା ? ତୁମକୁ ଜଣା ପଡ଼ିବ ନା ! ତୁମେ ପିଉ ନଥିଲେ ମୋତେ କହିବାକୁ ପଡ଼ିଥାନ୍ତା । ତୁମେ ତ ପିଉଛ, ପୁଣି ମୋତେ କହିବା କ'ଣ ଦରକାର ? !'

**ପ୍ରଶ୍ନକର୍ତ୍ତା :** କିନ୍ତୁ କେତେ ଜାଗୃତି ରଖିବାକୁ ପଡ଼େ, କ୍ଷଣେ କ୍ଷଣେ !

**ଦାଦାଶ୍ରୀ :** କ୍ଷଣେ କ୍ଷଣେ, ୨୪ ଘଣ୍ଟା ଜାଗୃତି, ତା'ପରେ ଯାଇ ଏହି 'ଜ୍ଞାନ' ଆରମ୍ଭ ହେଲା । ଏହି 'ଜ୍ଞାନ' ଏମିତି ହିଁ ହୋଇଯାଇ ନାହିଁ ! ଅର୍ଥାତ୍ ପ୍ରଥମରୁ ହିଁ ଏହିପରି ସବୁ 'ଏଡ଼ଜଷ୍ଟମେଣ୍ଟ' ନେଇଥିଲି । ଯଥା ସମ୍ଭବ, ସେ ପର୍ଯ୍ୟନ୍ତ କ୍ଲେଶ ହେବାକୁ ଦେଇନାହିଁ ।

ଥରେ ମୁଁ ଗାଧୋଇବାକୁ ଗଲି, ତେବେ ଦେଖିଲି ଡାଳ ରଖିବା ଭୁଲିଗଲେ । ଏବେ ଯଦି ମୁଁ ଏଡ଼ଜଷ୍ଟ ନ କରେ, ତେବେ ମୁଁ ଜ୍ଞାନୀ କିପରି ? ମୁଁ ଏଡ଼ଜଷ୍ଟ କରିନିଏ । ହାତ ମାରିଲି, ତ ପାଣି ବହୁତ ଗରମ । ନଳ ଖୋଲିଲି, ତ ଟାଙ୍କି ଖାଲି । ପୁଣି ମୁଁ ତ ଧୀରେ-ଧୀରେ ହାତରେ ପାଣି ଥଣ୍ଡାକରି ଗାଧୋଇଲି । ସବୁ ମହାତ୍ମା କହିଲେ ଯେ 'ଆଜି ଦାଦାଜୀଙ୍କୁ ଗାଧୋଇବାରେ ବହୁତ ସମୟ ଲାଗିଲା ।' ତେବେ କ'ଣ କରାଯିବ ? ପାଣି ଥଣ୍ଡା ହେଲେ ତ ? ମୁଁ କାହାରିକୁ ବି 'ଏଇଟା ଆଣ ଏବଂ ସେଇଟା ଆଣ' ଏପରି କୁହେ ନାହିଁ । ଏଡ଼ଜଷ୍ଟ ହୋଇଯାଏ । ଏଡ଼ଜଷ୍ଟ ହୋଇଯିବା ହିଁ ଧର୍ମ । ଏହି ଦୁନିଆରେ ତ ପ୍ଲସ-ମାଇନସର ଏଡ଼ଜଷ୍ଟମେଣ୍ଟ କରିବାକୁ ହୁଏ । ମାଇନସ୍ ଥିଲେ ସେଠି ପ୍ଲସ୍ ଏବଂ ପ୍ଲସ୍ ଥିଲେ ସେଠି ମାଇନସ୍ କରିବାକୁ ହୁଏ ।

ମୋର ଚତୁରତା(ହୋସିୟାରୀ,କୁଶଳତା)କୁ ଯଦି କେହି ପାଗଳାମି କୁହେ ତେବେ ମୁଁ କହିବି, 'ହଁ, ଠିକ୍ ଅଛି ।' ତୁରନ୍ତ ତାହାକୁ ମାଇନସ୍ କରିଦିଏ ।

ଯାହାକୁ ଏଡ଼ଜଷ୍ଟ ହେବା ନ ଆସିଲା, ସେହି ମଣିଷକୁ ମଣିଷ କିପରି କହିବା ? ଯିଏ ସଂଯୋଗାଧୀନ ହୋଇ ଏଡ଼ଜଷ୍ଟ ହୋଇଯାଏ, ସେହି ଘରେ କିଛି ବି ଝଞ୍ଜଂଟ୍ ହେବ ନାହିଁ । ମୁଁ ମଧ୍ୟ ହୀରାବା ସହିତ ଏଡ଼ଜଷ୍ଟ ହୋଇ ଆସିଥିଲି ନା ! ତାଙ୍କର ଲାଭ ଉଠାଇବାର ଅଛି ତେବେ ଏଡ଼ଜଷ୍ଟ ହୋଇଯାଅ । ଏ ତ ଫାଇଦା କିଛି ନାହିଁ, ଓଲଟା ବୈର(ଶତ୍ରୁତା) ବାନ୍ଧିବା, ତାହା ଅଲଗା । କାରଣ ପ୍ରତ୍ୟେକ ଜୀବ ସ୍ୱତନ୍ତ୍ର ଅଟେ ଏବଂ ନିଜେ ସୁଖ ଖୋଜିବାକୁ ଆସିଛି । ସେ ଅନ୍ୟ ମାନଙ୍କୁ ସୁଖ ଦେବାକୁ ଆସିନାହିଁ । ଏବେ, ତା'କୁ ସୁଖ ବଦଳରେ ଦୁଃଖ ମିଳେ ତେବେ ବୈର ବାନ୍ଧେ, ପୁଣି ସେ ସ୍ତ୍ରୀ ହେଉ ବା ପୁଅ ହେଉ ।

**ପ୍ରଶ୍ନକର୍ତ୍ତା :** ସୁଖ ଖୋଜିବାକୁ ଆସେ ଆଉ ଦୁଃଖ ମିଳେ, ତେବେ ପୁଣି ବୈର ବାନ୍ଧେ ?

**ଦାଦାଶ୍ରୀ :** ହଁ, ସେ ତ ପୁଣି ଭାଇ ହେଉ ଅବା ବାପ ହେଉ, କିନ୍ତୁ ଭିତରେ ଭିତରେ ସେହି କଥାକୁ ନେଇ ବୈର ବାନ୍ଧେ । ଏହି ସମଗ୍ର ସଂସାର ଏହିପରି ଅଟେ, ବୈର ହିଁ ବାନ୍ଧୁଥାଏ ! ସ୍ୱ-ଧର୍ମରେ କାହାରି ସହ ବୈର ହୁଏ ନାହିଁ ।

ପ୍ରତ୍ୟେକ ବ୍ୟକ୍ତିର ଜୀବନରେ କିଛି ପ୍ରିନ୍ସିପଲ୍(ସିଦ୍ଧାନ୍ତ) ରହିବା ଉଚିତ । ତଥାପି ସଂଯୋଗାନୁସାରେ ବ୍ୟବହାର କରିବା ଉଚିତ । ସଂଯୋଗ ସହିତ ଏଡ଼ଜଷ୍ଟ ହୋଇଯାଏ, ସେ ମଣିଷ । ଯଦି ପ୍ରତ୍ୟେକ ସଂଯୋଗରେ ଏଡ଼ଜଷ୍ଟମେଣ୍ଟ ନେବା ଆସିଯାଏ ତେବେ ସିଧା ମୋକ୍ଷରେ ପହଞ୍ଚାଯାଇ ପାରେ, ଏପରି ଗଜବ ହତିଆର ଅଟେ ।

ଏହି ଦାଦାଜୀ ସୂକ୍ଷ୍ମ ବିଚାର ସମ୍ପନ୍ନ ମଧ୍ୟ ଅଟନ୍ତି, ମିତବ୍ୟୟୀ ମଧ୍ୟ ଏବଂ ଉଦାର ମଧ୍ୟ ଅଟନ୍ତି । ସମ୍ପୂର୍ଣ୍ଣ ରୂପେ ଉଦାର ଅଟନ୍ତି । ତଥାପି 'କମ୍ପ୍ଲିଟ୍ ଏଡ଼ଜଷ୍ଟେବଲ୍' । ଅନ୍ୟ ମାନଙ୍କ ପାଇଁ ଉଦାର, ନିଜ ପାଇଁ ମିତବ୍ୟୟୀ ଏବଂ ଉପଦେଶ ଦେବା ସମୟରେ ସୂକ୍ଷ୍ମ ବିଚାର ସମ୍ପନ୍ନ । ଏଥିପାଇଁ ସାମନାବାଲାକୁ ମୋର ଗଭୀର ବିଚାର ସମ୍ପନ୍ନ ବ୍ୟବହାର ଦେଖାଯାଏ । ମୋର ଇକୋନୋମୀ(ଅର୍ଥନୀତି)

ଏଡ଼ଜଷ୍ଟେବଲ୍ ହୋଇଥାଏ, ଟପ୍‌ମୋଷ୍ଟ(ସର୍ବୋଚ୍ଚ) ହୋଇଥାଏ । ମୁଁ ତ ପାଣିର ଉପଯୋଗ ମଧ୍ୟ ମିତବ୍ୟୟୀ ହୋଇ କରିଥାଏ । ମୋର ପ୍ରାକୃତ ଗୁଣ ସହଜ ଭାବର ହୋଇଥାଏ ।

## ନଚେତ୍ ବ୍ୟବହାରିକ ସମସ୍ୟା ଅଟକାଇବ

ପ୍ରଥମେ ଏହି ବ୍ୟବହାର ଶିଖିବାର ଅଛି । ବ୍ୟବହାରିକ ଜ୍ଞାନ ବିନା ତ ଲୋକେ ନାନା ଜାତିର ମାଡ଼ ଖାଆନ୍ତି(ଅସୁବିଧାର ସମ୍ମୁଖୀନ ହୁଅନ୍ତି) ।

**ପ୍ରଶ୍ନକର୍ତ୍ତା :** ଅଧ୍ୟାତ୍ମ ସମ୍ବନ୍ଧୀୟ ଆପଣଙ୍କ କଥା ବିଷୟରେ ତ କ'ଣ କୁହାଯିବ, କିନ୍ତୁ ବ୍ୟବହାରରେ ମଧ୍ୟ ଆପଣଙ୍କ କଥା 'ଟପ'(ସର୍ବୋଚ୍ଚ) ଅଟେ ।

**ଦାଦାଶ୍ରୀ :** ଏପରି ଅଟେ ଯେ, ବ୍ୟବହାରର 'ଟପ୍'କୁ ନବୁଝି କେହି ମୋକ୍ଷରେ ଯାଇ ନାହିଁ । କେତେ ବି ମୂଲ୍ୟବାନ, ବାର ଲକ୍ଷର ଆତ୍ମଜ୍ଞାନ ଥାଉ, କିନ୍ତୁ କ'ଣ ବ୍ୟବହାର ଛାଡ଼ି ଦେବ ?! ସେ ନ ଛାଡ଼ିଲେ ତୁମେ କ'ଣ କରିବ ? ତୁମେ ତ 'ଶୁଦ୍ଧାତ୍ମା' ହିଁ ଅଟ, କିନ୍ତୁ ବ୍ୟବହାର ଛାଡ଼ିଲେ ତ ? ତୁମେ ବ୍ୟବହାରକୁ ଜଟିଳ କରି ଚାଲିଛ । ଫଟାଫଟ୍ ସମାଧାନ ଆଣ ନା ?

ଏ ଭାଇକୁ କହିଥିବ ଯେ, 'ଯା, ଦୋକାନରୁ ଆଇସ୍‌କ୍ରୀମ ନେଇ ଆସ ।' କିନ୍ତୁ ଅଧା ରାସ୍ତାରୁ ଫେରିକି ଆସେ । ଆମେ ପଚାରିବା, 'କ'ଣ ହେଲା ?' ତେବେ ସେ କୁହେ ଯେ, 'ରାସ୍ତାରେ ଗଧ ଦେଖିଦେଲି, ଅଶୁଭ ହୋଇଗଲା !' ଏବେ, ତା'କୁ ଏହିପରି ଓଲଟା ଜ୍ଞାନ ହୋଇଯାଇଛି, ତାହା ଆମକୁ ବାହାର କରିଦେବା ଉଚିତ୍ ନା ? ତା'କୁ ବୁଝାଇବା ଉଚିତ ଯେ, 'ଭାଇ, ଗଧ ଭିତରେ ମଧ୍ୟ ଭଗବାନ ବିରାଜିତ, ଏଥିପାଇଁ ଅଶୁଭ ବୋଲି କିଛି ନାହିଁ । ତୁ ଗଧକୁ ତିରସ୍କାର କଲେ ତାହା ଗଧ ମଧ୍ୟରେ ବିରାଜିତ ଭଗବାନଙ୍କ ନିକଟରେ ପହଞ୍ଚିବ । ତୋତେ ଏହାର ଭାରୀ ଦୋଷ ଲାଗିବ । ପୁନର୍ବାର ଏପରି ନ ହେବା ଉଚିତ ।' ଏହିପରି ଓଲଟା ଜ୍ଞାନ ହୋଇଛି, ସେହି କାରଣରୁ ଲୋକମାନେ ଏଡ଼ଜଷ୍ଟ ହୋଇ ପାରୁନାହାନ୍ତି ।

## ଓଲଟାକୁ ସିଧା କରାଏ, ସେ ସମକିତୀ

ସମକିତୀର ଲକ୍ଷଣ କ'ଣ ? ତେବେ କହିବା ଯେ, ଘରର ସବୁଲୋକ

କିଛି ଓଲଟା କରିଦିଅନ୍ତି, ତଥାପି ସେ ଠିକ୍ କରିଦିଏ । ପ୍ରତ୍ୟେକ କଥାରେ ସିଧା ହିଁ କରିବା, ଏହା ସମକିତୀର ଲକ୍ଷଣ । ମୁଁ ଏହି ସଂସାରର ବହୁତ ସୂକ୍ଷ୍ମ ଆବିଷ୍କାର କରିଛି । ଅନ୍ତିମ ପ୍ରକାରର ଆବିଷ୍କାର ପରେ ମୁଁ ଏହି ସବୁ କଥା କହୁଅଛି । ବ୍ୟବହାରରେ କିପରି ରହିବା ଉଚିତ, ତାହା ମଧ୍ୟ ଦିଏ ଏବଂ ମୋକ୍ଷରେ କିପରି ଯାଇପାରିବା ଏହା ମଧ୍ୟ ଦେଇଥାଏ । ତୁମର ବାଧାବିଘ୍ନ କିପରି କମ୍ ହେବ, ଏହା ହିଁ ମୋର ହେତୁ ।

ନିଜ କଥା, ସାମନାବାଲାକୁ 'ଏଡ଼ଜଷ୍ଟ' ହେବା ହିଁ ଉଚିତ । ନିଜ କଥା ସାମନାବାଲାକୁ 'ଏଡ଼ଜଷ୍ଟ' ନ ହେଲେ ତାହା ନିଜର ହିଁ ଭୁଲ । ଭୁଲ ସୁଧୁରିବ ତେବେ 'ଏଡ଼ଜଷ୍ଟ' ହେବ । ବିତରାଗୀମାନଙ୍କ ବାର୍ତ୍ତା 'ଏଭ୍ରିହ୍ୱେୟାର ଏଡ଼ଜଷ୍ଟମେଣ୍ଟ'ର ଅଟେ ।

**ପ୍ରଶ୍ନକର୍ତ୍ତା :** ଦାଦାଜୀ, 'ଏଡ଼ଜଷ୍ଟ ଏଭ୍ରିହ୍ୱେୟାର' ଏ ଯେଉଁ ଆପଣ କହିଲେ, ତାହା ଦ୍ୱାରା ତ' ଆଚ୍ଛା ଆଚ୍ଛା ଲୋକଙ୍କର ସମାଧାନ ଆସିଯିବ !

**ଦାଦାଶ୍ରୀ :** ସମସ୍ତଙ୍କର ସମାଧାନ ଆସିଯିବ । ମୋର ଏ ଯେଉଁ ଗୋଟିଏ-ଗୋଟିଏ ଶବ୍ଦ ଅଛି, ସେମାନେ ସମସ୍ତଙ୍କର ଶୀଘ୍ର ସମାଧାନ ଆଣିବେ । ସେମାନେ ସିଧା ମୋକ୍ଷ ପର୍ଯ୍ୟନ୍ତ ନେଇଯିବେ । ସେଥିପାଇଁ 'ଏଡ଼ଜଷ୍ଟ ଏଭ୍ରିହ୍ୱେୟାର' !

**ପ୍ରଶ୍ନକର୍ତ୍ତା :** ବର୍ତ୍ତମାନ ପର୍ଯ୍ୟନ୍ତ ଯେଉଁଠି ଭଲ ଲାଗୁଥିଲା, ସେଠି ସମସ୍ତେ ଏଡ଼ଜଷ୍ଟ ହେଉଥିଲେ ଆଉ ଆପଣଙ୍କ କଥାରୁ ତ ଏପରି ଲାଗୁଛି ଯେ ଯେଉଁଠି ଭଲ ଲାଗୁନାହିଁ, ସେଠି ପ୍ରଥମେ ତୁ ଏଡ଼ଜଷ୍ଟ ହୋଇ ଯା ।

**ଦାଦାଶ୍ରୀ :** 'ଏଭ୍ରିହ୍ୱେୟାର ଏଡ଼ଜଷ୍ଟ' ହେବାର ଅଛି ।

## ଦାଦାଜୀଙ୍କ ବିସ୍ମୟକର ବିଜ୍ଞାନ !

**ପ୍ରଶ୍ନକର୍ତ୍ତା :** 'ଏଡ଼ଜଷ୍ଟମେଣ୍ଟ' ର ଯେଉଁ କଥା, ତା' ପଛରେ ଭାବ କ'ଣ ଅଛି ? ପୁଣି କେତେ ପର୍ଯ୍ୟନ୍ତ 'ଏଡ଼ଜଷ୍ଟମେଣ୍ଟ' ନେବା ଉଚିତ ?

**ଦାଦାଶ୍ରୀ :** ଭାବ ହେଉଛି ଶାନ୍ତିର, ହେତୁ ଶାନ୍ତିର ଅଟେ । ଅଶାନ୍ତି ସୃଷ୍ଟି

ନ କରାଇଦେବାର କିମିଆ(କୌଶଳ) ଅଟେ । 'ଦାଦାଜୀ'ଙ୍କ 'ଏଡ଼ଜଷ୍ଟମେଣ୍ଟ'ର ବିଜ୍ଞାନ ଅଟେ । ବିସ୍ମୟ ଅଟେ ଏହି 'ଏଡ଼ଜଷ୍ଟମେଣ୍ଟ' । ଆଉ ଯେଉଁଠି 'ଏଡ଼ଜଷ୍ଟ' ନ ହୁଅନ୍ତି, ସେଠାରେ ତୁମକୁ ତାହାର ସ୍ୱାଦ ତ ଆସୁଥିବ ନା ? ! 'ଡ଼ିସ୍‌ଏଡ଼ଜଷ୍ଟମେଣ୍ଟ' ହିଁ ମୂର୍ଖତା ଅଟେ । 'ଏଡ଼ଜଷ୍ଟମେଣ୍ଟ'କୁ ମୁଁ ନ୍ୟାୟ କୁହେ । ଆଗ୍ରହ-ଦୁରାଗ୍ରହକୁ କେଉଁଠି ନ୍ୟାୟ କୁହାଯାଏ ନାହିଁ । କୌଣସି ବି ପ୍ରକାରର ଆଗ୍ରହ, ନ୍ୟାୟ ନୁହେଁ । ମୁଁ କୌଣସି ବି କଥାରେ ଜିଦ୍ ଧରି ବସିରୁହେ ନାହିଁ । ଯେଉଁ ପାଣିରେ ମୁଗ ସିଝେ, ସେଥିରେ ସିଝାଇ ଦିଏ । ଶେଷରେ ନାଳ ପାଣିରେ ମଧ୍ୟ ସିଝାଇ ଦିଏ !

ଏ ପର୍ଯ୍ୟନ୍ତ ଜଣେ ହେଲେ ବ୍ୟକ୍ତି ମୋ ସହିତ ଡ଼ିସ୍-ଏଡ଼ଜଷ୍ଟ ହୋଇ ନାହିଁ । ଆଉ ଏହି ଲୋକମାନଙ୍କୁ ତ ଘରର ଚାରି ସଦସ୍ୟ ବି ଏଡ଼ଜଷ୍ଟ ହେଉ ନାହାନ୍ତି । ଏହି ଏଡ଼ଜଷ୍ଟ ହେବା ଆସିବ ନା ନାହିଁ ? ଏପରି ହୋଇ ପାରିବ ନା ନାହିଁ ? ଆମେ ଯେପରି ଦେଖୁ ସେପରି ତ ଆମକୁ ଆସିଯାଏ ନା ? ଏହି ସଂସାରର ନିୟମ କ'ଣ ଯେ ଯେତିକି ତୁମେ ଦେଖିବ ସେତିକି ତ' ତୁମକୁ ଆସିଯିବ । ସେଥିରେ କିଛି ଶିଖିବା ଭଳି ନଥାଏ । କ'ଣ ଆସିବ ନାହିଁ ? ମୁଁ ଯଦି ତୁମକୁ କେବଳ ଉପଦେଶ ଦେଇଚାଲିବି, ତେବେ ତାହା ତୁମକୁ ଆସିବ ନାହିଁ, କିନ୍ତୁ ମୋର ଆଚରଣ ତୁମେ ଦେଖିବ ତେବେ ସହଜରେ ଆସିଯିବ ।

ଏଠି ଘରେ 'ଏଡ଼ଜଷ୍ଟ' ହେବା ଆସେ ନାହିଁ ଆଉ ଆତ୍ମଜ୍ଞାନର ଶାସ୍ତ୍ର ପଢ଼ିବାକୁ ବସିଥାଆନ୍ତି ! ଛାଡ଼ ନା ! ପ୍ରଥମେ 'ଏହା' ଶିଖ ନା ! ଘରେ 'ଏଡ଼ଜଷ୍ଟ' ହେବା ଆସେ ନାହିଁ । ଏପରି ଅଟେ ଏହି ସଂସାର ।

ସଂସାରରେ ଆଉ କିଛି ନ ଆସୁ ପଛେ, କିଛି ଅସୁବିଧା ନାହିଁ । କାମ ଧନ୍ଦା କରିବା କମ୍ ଆସୁଥିବ ତେବେ ଅସୁବିଧା ନାହିଁ, କିନ୍ତୁ ଏଡ଼ଜଷ୍ଟ ହେବା ଆସିବା ଉଚିତ । ଅର୍ଥାତ୍, ବସ୍ତୁସ୍ଥିତିରେ ଏଡ଼ଜଷ୍ଟ ହେବା ଶିଖିବା ଉଚିତ୍ । ଏହି କାଳରେ ଏଡ଼ଜଷ୍ଟ ହେବା ନ ଆସେ ତେବେ ମରିଯିବ । ଏଣୁ 'ଏଡ଼ଜଷ୍ଟ ଏଭ୍ରିହ୍ୱେୟାର' ହୋଇ କାମ କାଢ଼ିନେବା ଉଚିତ ।

**- ଜୟ ସଚ୍ଚିଦାନନ୍ଦ**

# दादा भगवान फाउन्डेशन के द्वारा प्रकाशित पुस्तकें

१. ज्ञानी पुरुष की पहचान
२. सर्व दु :खो से मुक्ति
३. कर्म का सिद्धांत
४. आत्मबोध
५. मैं कौन हूँ ?
६.वर्तमान तीर्थकंर श्री सीमंधर स्वामी
७.भुगते उसी की भूल
८. एडजस्ट एवरीव्हेयर
९. टकराव टालिए
१०. हुआ सो न्याय
११. चिंता
१२. क्रोध
१३. प्रतिक्रमण
१४. दादा भगवान कौन ?
१५. पैसों का व्यवहार
१६. अंत : करण का स्वरुप
१७. जगत कर्ता
१८. त्रिमंत्र
१९. भावना से सुधरे जन्मोंजन्म
२०. माता-पिता और बच्चों का व्यवहार
२१. प्रेम
२२. समझ से प्राप्त ब्रह्मचर्य
२३. दान
२४. मानव धर्म
२५. सेवा-परोपकार
२६. मृत्यु समय, पहले और पश्चात
२७. निजदोष दर्शन से...निर्दोष
२८. पति-पत्नि का दिव्य व्यवहार
२९. क्लेश रहित जीवन
३०. गुरु-शिष्य
३१. अहिंसा
३२. सत्य-असत्य के रहस्य
३३. चमत्कार
३४. पाप-पुण्य
३५. वाणी,व्यवहार में...
३६. कर्म का विज्ञान
३७. आप्तवाणी - १
३८. आप्तवाणी - २
३९. आप्तवाणी - ३
४०. आप्तवाणी - ४
४१. आप्तवाणी - ५
४२. आप्तवाणी - ६
४३. आप्तवाणी - ७
४४. आप्तवाणी - ८
४५.आप्तवाणी - ९
४६.आप्तवाणी - १३(पूर्वार्ध)
४५. समझ से प्राप्त ब्रह्मचर्य (पूर्वार्ध-उत्तरार्ध)

• ଦାଦା ଭଗବାନ ଫାଉଣ୍ଡେଶନ ଦ୍ୱାରା ଗୁଜରାଟୀ ଭାଷାରେ ବି ୬୨ ପୁସ୍ତକ ପ୍ରକାଶିତ ହୋଇଛି । ୱେବସାଇଟ୍ **www.dadabhagwan.org** ରେ ମଧ୍ଯ ଆପଣ ଏ ସମସ୍ତ ପୁସ୍ତକ ପ୍ରାପ୍ତ କରିପାରିବେ ।

• ଦାଦା ଭଗବାନ ଫାଉଣ୍ଡେଶନ ଦ୍ୱାରା ପ୍ରତ୍ୟେକ ମାସ ହିନ୍ଦୀ, ଗୁଜରାଟୀ ତଥା ଇଂରାଜୀ ଭାଷାରେ 'ଦାଦାବାଣୀ' ମାଗାଜିନ୍ ପ୍ରକାଶିତ ହେଉଛି ।

**ଓଡ଼ିଆ ପୁସ୍ତକ** : ୧. ଆତ୍ମସାକ୍ଷାତ୍କାର ୨.ଘର୍ଷଣ ଟାଳନ୍ତୁ ୩. ମୁଁ କିଏ ?
୪. ଏଡ଼ଜଷ୍ଟ ଏଭ୍ରିହ୍ୱେୟାର ୫. ଚିନ୍ତା ୬. ମାନବ ଧର୍ମ
୭. କ୍ରୋଧ ୮. ଯାହା ହେଲା ତାହା ନ୍ୟାୟ

# ପ୍ରାପ୍ତିସ୍ଥାନ

## ଦାଦା ଭଗବାନ ପରିବାର

**ଅଡ଼ାଲଜ** : ତ୍ରିମନ୍ଦିର, ସୀମନ୍ଧର ସିଟୀ, ଅହମଦାବାଦ-କଲୋଲ ହାଇୱେ, ପୋଷ୍ଟ-ଅଡ଼ାଲଜ, ଜିଲ୍ଲା-ଗାନ୍ଧୀନଗର, ଗୁଜରାଟ-୩୮୨୪୨୧, ଫୋନ-(୦୭୯)୩୯୮୩୦୧୦୦

**ରାଜକୋଟ**: ତ୍ରିମନ୍ଦିର, ଅହମଦାବାଦ-ରାଜକୋଟ ହାଇୱେ, ତରଘଡ଼ିୟା ଚୋକଡ଼ି(ସର୍କଲ), ପୋ-ମାଲିୟାସଣ, ଜିଲ୍ଲା-ରାଜକୋଟ, ଫୋନ-୯୨୭୪୧୧୧୩୯୩

**ଭୁଜ୍** : ତ୍ରିମନ୍ଦିର, ହିଲ୍ ଗାର୍ଡେନ ପଛ,ଏୟାରପୋର୍ଟ ରୋଡ଼, (୦୨୮୩୨) ୨୯୦୧୨୩

**ଗୋଧ୍ରା** : ତ୍ରିମନ୍ଦିର, ଭାମେୟା ଗାଁ, ଏକ୍ସିଆଇ ଗୋଡାଉନ୍ ସାମନା, ଗୋଧ୍ରା । (ଜି-ପଞ୍ଚମହାଲ) ଫୋନ-(୦୨୬୭୨) ୨୬୨୩୦୦

**ମୋର୍‌ବୀ** : ତ୍ରିମନ୍ଦିର, ମୋରବୀ-ନବଲଖି ହାଇୱେ, ପୋ:ଜୟପୁର, ଜିଲ୍ଲା-ରାଜକୋଟ, ଫୋନ-(୦୨୮୨୨)୨୯୭୦୯୭

**ଅମ୍‌ରେଲୀ** : ତ୍ରିମନ୍ଦିର, ଲିଲିୟା ରୋଡ, ବାଇପାସ ଚୋକଡି, ଖାରାବାଡି, ୯୯୨୪୩୪୪୪୬୦

**ସୁରେନ୍ଦ୍ରନଗର** : ତ୍ରିମନ୍ଦିର, ସୁରେନ୍ଦ୍ରନଗର-ରାଜକୋଟ ହାଇୱେ, ଲୋକ ବିଦ୍ୟାଳୟ ପାଖ, ମୂଳି ରୋଡ, ୯୮୭୯୨୩୨୮୭୭

**ଅହମଦାବାଦ**:ଦାଦା ଦର୍ଶନ, ୫, ମମତାପାର୍କ ସୋସାଇଟୀ, ନବ ଗୁଜରାଟ କଲେଜ ପଛ, ଉସ୍ମାନପୁରା, ଅହମଦାବାଦ-୩୮୦୦୧୪, ଫୋନ-(୦୭୯)୨୭୫୪୦୪୦୮

**ବଡ଼ୋଦରା** : ଦାଦା ମନ୍ଦିର, ୧୭, ମାମା କି ପୋଲ-ମୁହଲ୍ଲା, ରାବପୁରା ପୋଲିସ ଷ୍ଟେସନ ପାଖ, ସଲାଟ ୱାଡ଼ା, ବଡ଼ୋଦରା, ୯୯୨୪୩୪୩୩୩୫

**ମୁମ୍ବାଇ:**୯୩୨୩୫୨୮୯୦୧, **ବାଙ୍ଗାଲୋର:**୯୫୯୦୯୭୯୦୯୯, **କୋଲକତା:**୦୩୩-୩୨୯୩୩୮୮୫, **ଜଲନ୍ଧର:**୯୮୧୪୦୬୩୦୪୩, **ଜୟପୁର:**୯୩୫୧୪୦୮୨୮୫, **ହାଇଦ୍ରାବାଦ:**୯୯୮୯୮୭୭୭୮୬, **ଇନ୍ଦୋର:**୯୮୯୩୫୪୫୩୫୧, **ଅମରାବତୀ:**୯୪୨୨୯୧୫୦୬୪, **ରାୟପୁର:**୯୩୨୯୫୨୩୭୩୭, **ଭିଲାଈ:**୯୮୨୭୪୮୧୩୩୬, **ଦିଲ୍ଲୀ:**୯୮୧୦୦୯୮୫୬୪, **ଭୋପାଲ୍:**୯୪୨୫୦୨୪୪୦୫, **ଚେନ୍ନାଈ:**୯୩୮୦୧୫୯୯୫୭ **ଓଡିଶା:**୮୭୬୩୦୭୩୧୧୧


**www.dadabhagwan.org**
**Email : info@dadabhagwan.org**



## ଏଡ଼ଜଷ୍ଟ ଏଭ୍ରିହ୍ୱେୟାର

ସଂସାରରେ ଆଉ କିଛି ନ ଆସେ, ତେବେ ଅସୁବିଧା ନାହିଁ କିନ୍ତୁ 'ଏଡ଼ଜଷ୍ଟ' ହେବା ତ ଆସିବା ଉଚିତ । ସାମ୍ନାବାଲା 'ଡିସ-ଏଡ଼ଜଷ୍ଟ' ହେଉଥାଉ, କିନ୍ତୁ ତୁମକୁ ଏଡ଼ଜଷ୍ଟ ହେବା ଆସିଯାଏ, ତେବେ କୌଣସି ଦୁଃଖ ହିଁ ରହିବ ନାହିଁ । ସେଥିପାଇଁ 'ଏଡ଼ଜଷ୍ଟ ଏଭ୍ରିହ୍ୱେୟାର' ! ପ୍ରତ୍ୟେକଙ୍କ ସହିତ ଏଡ଼ଜଷ୍ଟମେଣ୍ଟ ହେବା, ତାହା ସବୁଠାରୁ ବଡ଼ ଧର୍ମ ଅଟେ । ଏହି କାଳରେ ତ ସମସ୍ତଙ୍କର ଭିନ୍ନ ଭିନ୍ନ ପ୍ରକୃତି, ତେବେ ପୁଣି 'ଏଡ଼ଜଷ୍ଟ' ହେବା ବିନା କିପରି ଚଳିବ ?

ମୁଁ ଏହି ସଂସାରର ବହୁତ ସୂକ୍ଷ୍ମ ଆବିଷ୍କାର କରିଛି । ଅନ୍ତିମ ପ୍ରକାରର ଆବିଷ୍କାର ପରେ ମୁଁ ଏହିସବୁ କଥା କହୁଅଛି । ବ୍ୟବହାରରେ କିପରି ରହିବା ଉଚିତ୍, ତାହା ମଧ୍ୟ ବତାଏ ଏବଂ ମୋକ୍ଷରେ କିପରି ଯାଇ ପାରିବା, ଏହା ମଧ୍ୟ ବତାଇଥାଏ । ଆପଣଙ୍କ ଅସୁବିଧା କିପରି କମ ହେବ, ତାହା ହିଁ ମୋର ହେତୁ ।

-ଦାଦାଶ୍ରୀ

dadabhagwan.org

ISBN 978-93-85912-09-2

Printed in India

Price ₹10